ଶଙ୍କର ଶିବ ବୋଲି ଶରଣ ସିନା ଗଲି
ଶଙ୍କା ରହିଥିଲା ସବୁଦିନେ
ଶୁଭମୟ କାମନା ଶୀଘ୍ର ହୋଇଗଲା ଚୂନା
ଶାନ୍ତି ପାଇଲି ନାହିଁ ହେ ଉଜ୍ଜ୍ୱଳେଶ୍ୱ
ସାଧନା ନ ଜାଣିଲି ମୁହିଁ,
ସାବଧାନେ ତ ଅଛି ରହି
ସକଳ ବିଷୟକୁ ସାକ୍ଷୀ ରଖି ତୁମ୍ଭଙ୍କୁ
ସବୁ ସହୁଛି କ୍ଳେଶ ଖାଇ ହେ ଉଜ୍ଜ୍ୱଳେଶ୍ୱ।

କବିସୂର୍ଯ୍ୟ ବଳଦେବ ରଥ

---

ଉଜ୍ଜ୍ୱଳେଶ୍ୱର ବଡ଼ଖେମୁଣ୍ଡିର ପ୍ରସିଦ୍ଧ ଶୈବପୀଠ। ଜନଶ୍ରୁତି କହେ ରାଜା ପୁରୁଷୋତ୍ତମ ଦେବ ଓ ତଦୀୟ ଜ୍ୟେଷ୍ଠପୁତ୍ର ପଦ୍ମନାଭ ଦେବଙ୍କ ରାଜସଭା ପଣ୍ଡିତ ଉଜ୍ଜ୍ୱଳ ରଥ ଉଜ୍ଜ୍ୱଳେଶ୍ୱରଙ୍କୁ ଉପାସନା କରି ବୃଦ୍ଧାବସ୍ଥାରେ ପୁତ୍ରଲାଭ କରିଥିଲେ। ଏହି ପୁତ୍ର ପରେ କବିସୂର୍ଯ୍ୟ ବଳଦେବ ରଥ ନାମରେ ଖ୍ୟାତ ହେଲେ।



ଶ୍ରୀରାଧା, ସିଲ୍କ କନା ଉପରେ ଜଳ ରଙ୍ଗର ଚିତ୍ର

(ଭାରତର ରାଷ୍ଟ୍ରପତିଙ୍କ ରଜତଫଳକ ସମ୍ମାନ ପ୍ରାପ୍ତ)

ଦିଗପହଣ୍ଡି ପାଇଲ୍ଲା ମଠରେ ସଂରକ୍ଷିତ ଶ୍ରୀରାଧା ପଟଚିତ୍ର ଦ୍ୱାରା ଅନୁପ୍ରାଣିତ

ବଡ଼ଖେମୁଣ୍ଡି ରତ୍ନ
ଡ଼କ୍ଟର ଦିନନାଥ ପାଠୀ

ଲେଖକ : ପ୍ରଫେସର ଅଶୋକ କୁମାର ରଥ
ପ୍ରକାଶନ କାଳ : ୨୦୧୪
ପ୍ରକାଶକ : ଭଗବାନ ପାଢ଼ୀ
ତାରାତାରିଣୀ ପୁସ୍ତକାଳୟ
ପୁରୁଣା ବସ୍‌ଷ୍ଟାଣ୍ଡ,
ବ୍ରହ୍ମପୁର ୭୬୦୦୧, ଗଞ୍ଜାମ

**ଗୌରବମୟ ବଡ଼ଖେମୁଣ୍ଡି ଗ୍ରନ୍ଥରେ ସ୍ଥାନିତ ସପ୍ତମ ଅଧ୍ୟାୟ**
'ବଡ଼ଖେମୁଣ୍ଡି ରତ୍ନ ଡ଼କ୍ଟର ଦିନନାଥ ପାଠୀ'ର ସ୍ୱତନ୍ତ୍ର ମୁଦ୍ରଣ

ଅଗଷ୍ଟ ୨୩ ଶନିବାର ସନ୍ଧ୍ୟା ୬ଟାରେ ଭାରତୀୟ ବିଦ୍ୟାଭବନ, ଭୁବନେଶ୍ୱର ଶାଖା ଆନୁକୂଲ୍ୟରେ ଅନୁଷ୍ଠିତ ସଂବର୍ଦ୍ଧନା ଉତ୍ସବ ଅବସରରେ ପ୍ରକାଶିତ ।

**ପ୍ରଫେସର ଅଶୋକ କୁମାର ରଥ** ଜଣେ ବିଶିଷ୍ଟ ଐତିହାସିକ, ଗବେଷକ, ପ୍ରତ୍ନତତ୍ତ୍ୱବିତ୍, ଲିପିତତ୍ତ୍ୱବିତ୍, ସାରସ୍ୱତ ସାଧକ ତଥା ଶିକ୍ଷାବିତ୍ ଭାବେ ସୁଖ୍ୟାତ । ଉତ୍କଳ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ, ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ କ୍ୟୁରେଟର, ବିଭିନ୍ନ ସରକାରୀ ମହାବିଦ୍ୟାଳୟରେ ଅଧ୍ୟାପକ, ପ୍ରାଧ୍ୟାପକ, ଉପାଧ୍ୟକ୍ଷ, ଅଧ୍ୟକ୍ଷ, ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର କୁଳସଚିବ, ଅଗ୍ରଣୀ କଲେଜ ଅଧ୍ୟକ୍ଷ, ଆଞ୍ଚଳିକ ଶିକ୍ଷା ନିର୍ଦ୍ଦେଶକ ରୂପେ ନିଷ୍ଠାର ସହ କାର୍ଯ୍ୟ ନିର୍ବାହ ତାଙ୍କ ବୌଦ୍ଧିକ ଓ ପ୍ରଶାସନିକ ଦକ୍ଷତାର ସାର୍ଥକ ପରିଚୟ ।

# ମୁଖବନ୍ଧ

ବଡ଼ଖେମୁଣ୍ଡି ଏକ ଗୌରବାବହ ଐତିହ୍ୟର ସ୍ୱାକ୍ଷର ବହନ କରି ଯୁଗେଯୁଗେ ଓଡ଼ିଶାର ଇତିହାସ ଓ ସଂସ୍କୃତିକୁ ଋଦ୍ଧିମନ୍ତ କରି ଆସିଛି । ସଂସ୍କୃତ ଓ ଓଡ଼ିଆ ସାହିତ୍ୟର ପୁଣ୍ୟଭୂମି ରୂପେ ବିଦିତ, ପ୍ରାକୃତିକ ଶୋଭା ବିମଣ୍ଡିତ, ସବୁଜ ଗିରିବନ ବେଷ୍ଟିତ, କବି କୋବିଦଙ୍କ ବୌଦ୍ଧିକ ଚର୍ଚ୍ଚାରେ ସର୍ବଦା ମୁଖରିତ ବଡ଼ଖେମୁଣ୍ଡିର ସୁଖ୍ୟାତି ଅବିସମ୍ବାଦିତ । ବାସୁଦେବ ରଥ ସୋମଯାଜୀ, ବକ୍ରବାକ୍ ଚକ୍ରପାଣି ପଟ୍ଟନାୟକ, କବିସୂର୍ଯ୍ୟ ବଳଦେବ ରଥ, ନରସିଂହ ମାଠ, ଆଶୁକବି ରାଧାକୃଷ୍ଣ ବୈଦ୍ୟରତ୍ନ (ପାଠୀ), ଅନ୍ନପୂର୍ଣ୍ଣା ପଟ୍ଟନାୟକ ପ୍ରଭୃତି କବି ଓ କବୟତ୍ରୀଗଣ ବଡ଼ଖେମୁଣ୍ଡିର ସାହିତ୍ୟ-ନନ୍ଦନକାନନରେ ପାରିଜାତ ପ୍ରସ୍ଫୁଟନ କରାଇଛନ୍ତି । ଆଲୌକିକ ଶକ୍ତିସଂପନ୍ନ, ତତ୍ତ୍ୱଦର୍ଶୀ ସିଦ୍ଧସାଧକ, ଅବଧୂତବାଦର ଉଦ୍‌ଘୋଷକ, କାଳଜୟୀ ସଂସ୍କାରକ ତଥା ମାନବବାଦର ପ୍ରବକ୍ତା ମହାପୁରୁଷ ଅରକ୍ଷିତ ଦାସ (ବଳଭଦ୍ର ଦେବ ଓରଫ୍ ବୀରବର ଦେବ)ଙ୍କ ଜନ୍ମଭୂମି ହେଉଛି ବଡ଼ଖେମୁଣ୍ଡି । ସାମ୍ପ୍ରତିକ କାଳରେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ଚାରୁ ଓ କାରୁକଳା ଶିଳ୍ପୀ, କଳା ଐତିହାସିକ, ଗବେଷକ, ପ୍ରତ୍ନତାତ୍ତ୍ୱିକ, ସାହିତ୍ୟିକ ଓ ସମାଲୋଚକ ଡ଼କ୍ଟର ଦିନନାଥ ପାଠୀଙ୍କ ଜନ୍ମ ମଧ୍ୟ ପୂର୍ବତନ ଜମିଦାରୀ ବଡ଼ଖେମୁଣ୍ଡିର ରାଜଧାନୀ ଦିଗପହଣ୍ଡି ଗଡ଼ରେ । ବଡ଼ଖେମୁଣ୍ଡି ଗଞ୍ଜାମ ତଥା ଓଡ଼ିଶାର ଏକ ବିଶିଷ୍ଟ ଭୂଭାଗ ଯାହା ଉପରେ ଶହ ଶହ ବର୍ଷ ଧରି ଲୋକ ଜୀବନର ପ୍ରତ୍ୟେକ କ୍ଷେତ୍ରରେ ପାରଦର୍ଶିତା ବିସ୍ତୃତ । ସାହିତ୍ୟ, ସଙ୍ଗୀତ, କଳା, ଶିକ୍ଷା,

ଲୋକନାଟ୍ୟ, କୃଷି, ବାଣିଜ୍ୟ, ହସ୍ତଶିଳ୍ପ, ପ୍ରତ୍ନତାତ୍ତ୍ୱିକ ଓ ଧର୍ମାର୍ଥ ବିଭବରେ ଏ ଭୂମି ଅତ୍ୟନ୍ତ ଉଦାର ଓ ଉଦ୍ଦୀପ୍ତ।

ବଡ଼ଖେମୁଣ୍ଡି ଥିଲା ଗଞ୍ଜାମର ଦ୍ୱିତୀୟ ବୃହତ୍ତମ ଜମିଦାରୀ। ଏହାର ଅବସ୍ଥିତି ଓ ପରିବେଶ ପ୍ରକୃତିର ସୁଶୋଭାରଞ୍ଜିତ। ଉତ୍ତରରେ ସାନଖେମୁଣ୍ଡି ଓ ଶେରଗଡ଼ ଜମିଦାରୀ, ପୂର୍ବରେ ବ୍ରହ୍ମପୁର ତାଲୁକା ଓ ମହୁରୀ ଜମିଦାରୀ, ଦକ୍ଷିଣ ପୂର୍ବରେ ଟିକିଟି ଜମିଦାରୀ, ଦକ୍ଷିଣ ପଶ୍ଚିମରେ ଜରଡ଼ା, ସୁରଙ୍ଗୀ ଓ ପାରଳାଖେମୁଣ୍ଡି ଜମିଦାରୀ ଦ୍ୱାରା ସୀମାବଦ୍ଧ ବଡ଼ଖେମୁଣ୍ଡି ଜମିଦାରୀ ୧୯°୧୮’ ଦ୍ରାଘିମା ଏବଂ ୪୫°୩୦’ ଅକ୍ଷାଂଶ ମଧ୍ୟରେ ଅବସ୍ଥିତ।

ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଚିତ୍ରଶିଳ୍ପୀ ଡ଼କ୍ଟର ଦିନନାଥ ପାଠୀ ଏକାଧାରରେ ଜଣେ ରଙ୍ଗ ଓ ତୁଳୀର ଅନନ୍ୟ ତପସ୍ୱୀ, ଏକନିଷ୍ଠ, ନିରଳସ ଏବଂ ଯଶସ୍ୱୀ ସାରସ୍ୱତ ସାଧକ, ସତ୍ୟସନ୍ଧ ଗବେଷକ, କଳା ଐତିହାସିକ, ପ୍ରତ୍ନତାତ୍ତ୍ୱିକ, ଗଭୀର ଅନ୍ତର୍ଦୃଷ୍ଟି ସଂପନ୍ନ ସମୀକ୍ଷକ, ସମାଲୋଚକ, କଳା ସଂଗଠକ, ଭାବୁକ, କର୍ମଯୋଗୀ ତଥା ରୂପସୌନ୍ଦର୍ଯ୍ୟ ବିଭୋର କାବ୍ୟ ପୁରୁଷ। ତାଙ୍କ ଗବେଷଣାର ଭୂମିକା ଥିଲା ମନୀଷା ଭାସ୍ୱର ତଥା ସୁଦୂର ପ୍ରସାରୀ। ବୌଦ୍ଧିକ ଚର୍ଚ୍ଚାର ନିରପେକ୍ଷତା ତଥା ଶୁଦ୍ଧତା ଓ ସୁସ୍ପଷ୍ଟତା ରକ୍ଷା କରିଥିବା ଅତ୍ୟଳ୍ପ ଗବେଷକଙ୍କ ମଧ୍ୟରେ ଡ଼କ୍ଟର ପାଠୀ ଅନ୍ୟତମ। ସ୍ୱଭାବତଃ ସ୍ୱାଧୀନଚେତା, ସ୍ପଷ୍ଟବାଦୀ, ପ୍ରଶାନ୍ତ, ନିର୍ବିକାର, ସୃଜନଶୀଳ, ସ୍ୱାବଲମ୍ବୀ, କଳାପରମ୍ପରାର ମହନୀୟତାରେ ବିଶ୍ୱାସୀ ଦିନନାଥ ସାମ୍ପ୍ରତିକ କାଳର ଚାରୁ ଓ କାରୁକଳାର ପ୍ରଚଣ୍ଡ ମାର୍ତ୍ତଣ୍ଡ। ତାଙ୍କର ଅନେକ କଳାକୃତି ପୃଥିବୀର ବହୁ ପ୍ରସିଦ୍ଧ ଆର୍ଟ ଗ୍ୟାଲେରୀ ତଥା ସଂଗ୍ରହାଳୟରେ ପ୍ରଦର୍ଶିତ ହେବାର ଗୌରବ ଲାଭ କରିଛି। ତାଙ୍କ ମଧ୍ୟରେ କଳା ଓ ସଂସ୍କୃତିର ବିବିଧ ଧାରାର ଏକ ଅପୂର୍ବ ସମନ୍ୱୟ ପରିଦୃଷ୍ଟ ହୁଏ। ଦିନନାଥଙ୍କ ଶିଳ୍ପାୟନର ବ୍ୟାପକ ବ୍ୟାପ୍ତି କେବଳ କାଳର ନୁହେଁ, ଧାରାର, ଘଟଣାୟନର ଏବଂ ସଚେତନତାର।

ଦିନନାଥ ପାଠୀଙ୍କ ଜନ୍ମ ୧୯୪୨ ମସିହା ମେ ମାସ ୯ ତାରିଖରେ ଗଂଗରାଜବଂଶ ଶାସିତ ବଡଖେମୁଣ୍ଡି ଜମିଦାରୀ (ରାଜ୍ୟ)ର ରାଜଧାନୀ ଦିଗପହଣ୍ଡି ଗଡ଼ରେ ଏକ ସଂସ୍କୃତି ସଂପନ୍ନ କବି, ବୈଦ୍ୟ ଓ ଚିତ୍ରକର ପରିବାରରେ। ତାଙ୍କର ପୂର୍ବପୁରୁଷ

ବଡ଼ଖେମୁଣ୍ଡି ରାଜଦରବାରର ରାଜକବି ଓ ବୈଦ୍ୟରତ୍ନ ଭାବେ ଖ୍ୟାତି ଲାଭ କରିଥିଲେ। ଦିନନାଥ ଥିଲେ ପିତା ଶ୍ୟାମସୁନ୍ଦର ପାଠୀ ଓ ମାତା କମଳା ଦେବୀଙ୍କ କନିଷ୍ଠ ପୁତ୍ର। ତାଙ୍କ ପିତା ଶ୍ୟାମସୁନ୍ଦର ପାଠୀ ଜଣେ ନିଛକ ଗାନ୍ଧିବାଦୀ, ଆଶୁକବି, ଶିଳ୍ପୀ, ଗାୟକ, ତୁମ୍ବାବାଦକ ତଥା ନିର୍ଭିକ ଓ ନିରଳସ ବ୍ୟକ୍ତି ରୂପେ ସୁପରିଚିତ ଥିଲେ। ଡକ୍ଟର ଦିନନାଥ ପାଠୀଙ୍କ ପୁତ୍ର ଅଧ୍ୟାପକ ଡକ୍ଟର ସୌଭାଗ୍ୟ ପାଠୀ ଜଣେ ଚିତ୍ରଶିଳ୍ପୀ, କବି ଓ ଲେଖକ। ଇଂରାଜୀ ଭାଷାରେ ସୌଭାଗ୍ୟ ଅନେକ କବିତା ରଚନା କରିଛନ୍ତି। ତାଙ୍କ କବିତାରେ ବିଶ୍ୱ ପେକ୍ଷାପଟ, ମାନବବାଦ, ଧର୍ମ, ଦେଶ, ଜାତି ଓ ଅସ୍ମିତାର କକ୍ଷ କକ୍ଷାନ୍ତରରେ କଥା ପ୍ରସ୍ଫୁଟିତ। ଏତଦ୍ ଭିନ୍ନ ଭୁବନେଶ୍ୱରରୁ ଇଂରାଜୀ ଭାଷାରେ ପ୍ରକାଶ ପାଉଥିବା ଆନ୍ତର୍ଜାତିକ ସଂସ୍କୃତି ପତ୍ରିକା **ଅଙ୍ଗରାଗ**ର ସେ ସଂପାଦକ। ସେ ମଧ୍ୟ ସୁଇଜରଲାଣ୍ଡର ବି.ଇ.ଏଫ୍ ଫାଉଣ୍ଡେସନ୍ ଫେଲୋସିପ୍ ପାଇଛନ୍ତି। ସେ କୁଆଲାଲୁମ୍ପୁରଠାରେ ଅନୁଷ୍ଠିତ Stirring - Odissi ଆନ୍ତର୍ଜାତିକ ସେମିନାରର ନୃତ୍ୟ ପଂଜୀକରଣ ଅଧିବେଶନର ସଭାପତି ହେବାର ଗୌରବ ଲାଭ କରିଛନ୍ତି। ପ୍ରାଜ୍ଞ ପିତାମାତାଙ୍କର ସୁଯୋଗ୍ୟ ପୁତ୍ର ରୂପେ ଡକ୍ଟର ସୌଭାଗ୍ୟ ପାଠୀ ବଂଶର ଗୌରବାବହ କାବ୍ୟ ଓ ଚିତ୍ର ପରମ୍ପରାକୁ ବଜାୟ ରଖିଛନ୍ତି।

ଦିନନାଥ ପାଠୀ ଦିଗପହଣ୍ଡିର ପଞ୍ଚମ ଜର୍ଜ ହାଇସ୍କୁଲ (ଅଧୁନା ବଡ଼ଖେମୁଣ୍ଡି ହାଇସ୍କୁଲ)ରେ ଚତୁର୍ଥରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲେ। ସ୍କୁଲରେ ସେ ମାଗଣାରେ ବିଦ୍ୟାବୃତ୍ତି

ପାଇଥିଲେ। ଜଣେ କୃତି, ମେଧାବୀ, ମେଳାପୀ ଓ ଶୃଙ୍ଖଳିତ ଛାତ୍ର ଭାବେ ସେ ଶିକ୍ଷକ ଓ ସହପାଠୀଙ୍କର ଶ୍ରଦ୍ଧାଭାଜନ ହୋଇ ପାରିଥିଲେ। ତାଙ୍କର ଜ୍ୟେଷ୍ଠ ଭ୍ରାତା ଶିଳ୍ପୀ ଲୋକନାଥ ପାଠୀ ନିଜ ବାସଗୃହରେ ଚାରୁକଳା ମନ୍ଦିର ନାମକ ଏକ ବ୍ୟବସାୟିକ ଗ୍ରାମ୍ୟ କୁଟୀର ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା କରିଥିଲେ। ପଞ୍ଚମ ଶ୍ରେଣୀରେ ପଢ଼ିବା ବେଳୁ ବାଳକ ଦିନନାଥ ଏହି ଅନୁଷ୍ଠାନରେ ଜଣେ କନିଷ୍ଠ କଳାକାର ଭାବେ ତାଙ୍କର ଶିଳ୍ପୀ ଜୀବନ ଆରମ୍ଭ କରିଥିଲେ। ଏହି ଷ୍ଟୁଡ଼ିଓରେ ଥିଏଟର ପାଇଁ ପରଦା ଚିତ୍ରଣ, ଓଷାକୋଠି ଚିତ୍ର, ବିବାହ ଓ ବ୍ରତ ଆଦି ମାଙ୍ଗଳିକ କାର୍ଯ୍ୟ ଅନୁଷ୍ଠାନ ହେଉଥିବା ଘର କାନ୍ଥଚିତ୍ରାଙ୍କନ, ଠାକୁରାଣୀ ଯାତ୍ରାରେ ମାନସିକଧାରୀ ଏବଂ ଥିଏଟର ଅଭିନେତାଙ୍କ ବେଶପୋଷାକ ସଜ୍ଜିକରଣ ଓ ଚିତ୍ରଣ, କାଠ ଓ କାଗଜ ମଣ୍ଡର ବିଭିନ୍ନ ମୁଖା, ଜରି କିରଟୀ, ଚିତ୍ରବିଚିତ୍ର ସୋଲଫୁଲ, ନଚା କଣ୍ଡେଇ, ସିମେଣ୍ଟରେ ବିଭିନ୍ନ ଦେବଦେବୀଙ୍କ ମୂର୍ତ୍ତି ଗଠନ, ହାରମୋନିୟମ୍ ମରାମତି, ବହି ଓ ଫଟୋ ବନ୍ଧେଇ, ନାମଫଳକ ଓ ବିଜ୍ଞାପନ ଫଳକ ଲେଖା, ନାଟକ ଓ ଯାତ୍ରା ପାଇଁ ମ୍ୟାଜିକ ଲଣ୍ଠନ ପ୍ରସ୍ତୁତି ପ୍ରଭୃତି ଯାବତୀୟ କଳାତ୍ମକ କାର୍ଯ୍ୟରେ ତାଙ୍କ ଭାଇନାଙ୍କୁ ସହାୟତା କରୁକରୁ ଏସବୁ କାର୍ଯ୍ୟରେ ପିଲାଟିବେଳୁ ସେ ସିଦ୍ଧହସ୍ତ ହୋଇପାରିଥିଲେ। [୧]

ଗଞ୍ଜାମ ଜିଲ୍ଲା ଚିତ୍ର ଶିକ୍ଷକ ସଂଘ ଦ୍ୱାରା ଆୟୋଜିତ ସର୍ବଭାରତୀୟ ଶିଶୁ ଚିତ୍ରକଳା ପ୍ରଦର୍ଶନୀରେ ଦିନନାଥ ଲାଗେ ଲାଗେ ତିନିବର୍ଷ

ଭାଗ ନେଇ ପ୍ରତ୍ୟେକ ବର୍ଷ ସ୍ୱର୍ଣ୍ଣପଦକ ପ୍ରାପ୍ତ ହୁଅନ୍ତି। ପୁରସ୍କୃତ ଚିତ୍ରଗୁଡ଼ିକ ହେଲା - (୧) ଓପେକ୍ ଜଳରଙ୍ଗର ହରପାର୍ବତୀ (୧୯୫୬), ନେହରୁଙ୍କ ଚିତ୍ରପଟ (୧୯୫୭) ଓ ପାଠୁଆ ପିଲାଟିଏ ହାରକିନ୍ ଲଣ୍ଡନରେ ପାଠ ପଢୁଥିବା ବେଳର ପେନ୍‌ସିଲ୍ ସ୍କେଚ୍ (୧୯୫୮)। [୨] ଷୋହଳ ବର୍ଷ ବୟସରେ ୧୯୫୮ ମସିହାରେ ତାଙ୍କର ପ୍ରଥମ ଏକକ ଚିତ୍ର ପ୍ରଦର୍ଶନୀ ଦିଗପହଣ୍ଡିଠାରେ କୃଷିମେଳା ପରିସରରେ ଅନୁଷ୍ଠିତ ହୋଇ ଜନାଦୃତ ହୋଇଥିଲା।

ଦିନନାଥ ପାଠୀ ତାଙ୍କର କେତେକ ସହପାଠୀଙ୍କ ସହିତ ମିଶି ନିଶାପାଣି ସେବନ ବିରୋଧରେ ସ୍ୱରଉତ୍ତୋଳନ ଏବଂ ଶୁଣ୍ଡିମାନେ ମଦ ବିକ୍ରି କରିବା ସମୟରେ ସେମାନଙ୍କ ଘର ଆଗରେ ବାରମ୍ବାର ଧରଣା ଦେବା ତାଙ୍କ ସ୍କୁଲ ଜୀବନର ଏକ ଉଲ୍ଲେଖନୀୟ ସାମାଜିକ କାର୍ଯ୍ୟ। ସେ ମ୍ୟାଟ୍ରିକ୍ ପରୀକ୍ଷା ଦେବାର କିଛି ମାସ ପୂର୍ବରୁ ତାଙ୍କ ପିତାଙ୍କ ବିୟୋଗ ଘଟିଲା। ପରୀକ୍ଷା ବେଳକୁ ସେ ଅସୁସ୍ଥ ହୋଇପଡ଼ିଲେ। ଏଭଳି ଦୁଃଖଦ ଓ ପ୍ରତିକୂଳ ପରିସ୍ଥିତିରେ ସେ ଔଷଧ ଖାଇ ସାମୟିକ ସୁସ୍ଥ ହୋଇ ମ୍ୟାଟ୍ରିକ ପରୀକ୍ଷା ଦେଇଥିଲେ। ଜଣେ ବିଚକ୍ଷଣ ଛାତ୍ର ଥିବା ହେତୁ ସମସ୍ତେ ଆଶା କରିଥିଲେ ଯେ ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇ ଓଡ଼ିଶାର ପ୍ରଥମ ଦଶଜଣଙ୍କ ଭିତରେ ରହିବେ। କିନ୍ତୁ ଖବର କାଗଜରେ ପରୀକ୍ଷାଫଳ ବାହାରିବା ପରେ ସେ ଦ୍ୱିତୀୟ ଶ୍ରେଣୀରେ ପାସ କରିଥିବା ଜାଣି ତାଙ୍କର ପ୍ରଧାନଶିକ୍ଷକ ରାମନାରାୟଣ ପାଢ଼ୀ

ଓ ଅନ୍ୟାନ୍ୟ ଶିକ୍ଷକମାନେ ତାହା ବିଶ୍ୱାସ କରିପାରିଲେ ନାହିଁ। ଭୁଲ ଟ୍ୟାବୁଲେସନ୍ (ସାରଣୀ କରଣ) ହେତୁ ସେ କମ୍ ମାର୍କ ଆଣିଲେ ବୋଲି ସମସ୍ତଙ୍କର ଧାରଣା ଜନ୍ମିଲା। ଜଣେ କିଏ କଟକ ସେକେଣ୍ଡାରି ଶିକ୍ଷା ବୋର୍ଡ ଅଫିସ୍‌କୁ ଯାଇ ଏ ସଂପର୍କରେ ଅନୁସନ୍ଧାନ କରିବା ନିମନ୍ତେ ସ୍ଥିର ହେଲା। ଏଥିରେ ଦିନନାଥ ମଧ୍ୟ ରାଜି ହୋଇଥିଲେ। ଏଥି ସକାଶେ ଏକ ବ୍ୟୟ ଅଟକଳ କରାଗଲା। ଦିନନାଥଙ୍କ ପାଖରେ ଆବଶ୍ୟକ ଅର୍ଥ ନଥିଲା। ତେଣୁ ବ୍ୟୟଭାର ବହନ କରିବା ସକାଶେ ଗଞ୍ଜାମ ଜିଲ୍ଲା ଚିତ୍ରଶିକ୍ଷକ ସଂଘଠାରୁ ପ୍ରାପ୍ତ ତିନୋଟି ସ୍ୱର୍ଣ୍ଣପଦକ ବିକିବା ପାଇଁ ସେ ସ୍ଥାନୀୟ ସୁନାରି (ବଣିଆ) ପାଖକୁ ଗଲେ। କିନ୍ତୁ ସ୍ୱର୍ଣ୍ଣପଦକ ତିନୋଟିରେ ଅଳ୍ପ ସୁନା ଥିବା ହେତୁ ସେଗୁଡ଼ିକ ବିକ୍ରୟ ହୋଇପାରିଲା ନାହିଁ ଏବଂ କଟକ ବୋର୍ଡ ଅଫିସକୁ ଯିବା ପ୍ରସ୍ତାବ ବନ୍ଦ ହେଲା।

ଦିନନାଥ ୧୯୫୮ ମସିହାରେ ମ୍ୟାଟ୍ରିକ୍ ପାସ୍ କରିବା ପରେ ବ୍ରହ୍ମପୁରସ୍ଥ ଖଲ୍ଲିକୋଟ କଲେଜରେ ନାମ ଲେଖାନ୍ତି। ମାତ୍ର ଅର୍ଥାଭାବ ହେତୁ ନାମ ଲେଖାର ପନ୍ଦର ଦିନ ପରେ ସେ କଲେଜ ପଢ଼ାଛାଡ଼ି ଦିଗପହଣ୍ଡି ଫେରି ଆସିଲେ। ନିଜର ଭରଣପୋଷଣ ନିମନ୍ତେ ସେ ବାଲାଜୀ ମଠ ପିଣ୍ଡାରେ ଛୋଟଛୋଟ ପିଲାଙ୍କୁ ଘରୋଇ ଟ୍ୟୁସନ କଲେ। ତା'ପରେ ଦିଗପହଣ୍ଡିଠାରୁ ମାତ୍ର ଚାରି କିଲୋମିଟର ଦୂର ଓଡ଼ାସିଙ୍ଗିର ସଂସ୍କୃତ ଟୋଲରେ ସେ ଇଂରାଜୀ ଶିକ୍ଷକଭାବେ କାର୍ଯ୍ୟକଲେ। ଏହିପରି ଅଳ୍ପବୟସରୁ ସେ ଜୀବନ ସଂଗ୍ରାମ ଆରମ୍ଭ କରିଥିଲେ। କିନ୍ତୁ ଧୈର୍ଯ୍ୟ ନହରାଇ ସେ ନିଜ କର୍ମ ପଥରେ ଆଗେଇ ଚାଲିଲେ। (୩)

ସମୟକ୍ରମେ ଦିନନାଥ ଚିତ୍ରକଳାରେ ଉଚ୍ଚଶିକ୍ଷା ନିମନ୍ତେ ଖଲ୍ଲିକୋଟସ୍ଥ ଚାରୁ ଓ କାରୁକଳା ବିଦ୍ୟାଳୟରେ ଅଧ୍ୟୟନ କରନ୍ତି। ଏହି ବିଦ୍ୟାଳୟର ଛାତ୍ରଥିବାବେଳେ ତାଙ୍କର ଅନେକ ତୈଳଚିତ୍ର ପୁରସ୍କୃତ ହୋଇଥିଲା। ସେଗୁଡ଼ିକ ମଧ୍ୟରେ କଲିକତାର ଫାଇନ୍ ଆର୍ଟ ଏକାଡ଼େମୀର ସର୍ବଭାରତୀୟ ଚିତ୍ରକଳା ପ୍ରଦର୍ଶନୀରେ ତୈଳଚିତ୍ର **ଫସଲ ଅମଳର ଗୀତ** (୧୯୬୩), ରାଜ୍ୟ ଲଳିତ କଳା ଏକାଡ଼େମୀର ପ୍ରଥମ ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀରେ ତୈଳଚିତ୍ର **ଆମଗାଁ** (୧୯୬୩), ଚାରୁ ଓ କାରୁକଳା ବିଦ୍ୟାଳୟର ବାର୍ଷିକ ପ୍ରଦର୍ଶନୀରେ ଲେପରଙ୍ଗର ଚିତ୍ର **ବାସୁଆବଳଦ** ପ୍ରଭୃତି ଉଲ୍ଲେଖଯୋଗ୍ୟ। ଏଥି ସକାଶେ ସେ ଶିକ୍ଷକ, ସହପାଠୀ ଓ ସମସାମୟିକ ଶିଳ୍ପୀ ମହଲରେ ଉଚ୍ଚ ପ୍ରଶଂସିତ ହୁଅନ୍ତି। ୧୯୬୩ ମସିହାରେ ଖଲ୍ଲିକୋଟ ଚାରୁ ଓ କାରୁକଳା ବିଦ୍ୟାଳୟରୁ ସର୍ବୋଚ୍ଚ ମାର୍କରଖି ଚିତ୍ରକଳାରେ ଡିପ୍ଲୋମା ହାସଲ କଲାପରେ ତାଙ୍କର କୃତିତ୍ୱ ଉତ୍ତରୋତ୍ତର ବୃଦ୍ଧି ପାଇଲା। ଓଡ଼ିଶାରେ ଚାରୁ ଓ କାରୁକଳାର ବିକାଶ ଓ ପ୍ରସାର ନିମନ୍ତେ ସେ ନିଜକୁ ଉତ୍ସର୍ଗ କଲେ।

୧୯୬୪ ମସିହାରେ ଦିନନାଥ ରାଜ୍ୟ ଯୋଜନା ବୋର୍ଡର ଆର୍ଟିଷ୍ଟ ଭାବେ ରାଜ୍ୟ ସଚିବାଳୟରେ ଅବସ୍ଥାପିତ ହେବାପରେ ତାଙ୍କର କର୍ମଭୂମି ହେଲା ଭୁବନେଶ୍ୱର। ଏହି ବର୍ଷ ଭୁବନେଶ୍ୱରରେ ସମସ୍ତ ଶିଳ୍ପୀଙ୍କୁ ନେଇ **ଶିଳ୍ପୀ ସଂସଦ** ଗଠନ ଏବଂ ଏହା ମାଧ୍ୟମରେ କଳା ପ୍ରତି ସଚ୍ଚେତନ ହେବା ସକାଶେ

ବିବିଧ ଚିତ୍ର ପ୍ରଦର୍ଶନୀ, ଚାରୁ ଓ କାରୁକଳା ସଂପର୍କୀୟ ଆଲୋଚନା ଚକ୍ରର ଆୟୋଜନ ଏବଂ **ଚିତ୍ରମ୍** ନାମରେ କଳା ବିଦ୍ୟାଳୟ ସ୍ଥାପନ ଥିଲା ତାଙ୍କର ଉଲ୍ଲେଖନୀୟ କାର୍ଯ୍ୟ। ୧୯୬୬ ମସିହାରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପରିସରସ୍ଥ କଳା ମଣ୍ଡପରେ ଭୁବନେଶ୍ୱରର ଅଗ୍ରଣୀ ସାହିତ୍ୟ ସଂସ୍ଥା ଗୋଦାବରୀଶ ସାହିତ୍ୟ ସଂସଦ ଦ୍ୱାରା ଆୟୋଜିତ ତାଙ୍କର **ଏକଶତ ଚିତ୍ରର ଏକକ ପ୍ରଦର୍ଶନୀ** ତାଙ୍କ ଜୀବନର ଏକ ସ୍ମରଣୀୟ ଘଟଣା। ସେହି ବର୍ଷ ଏକାଡେ଼ମୀ ଅଫ୍ ଫାଇନ୍ ଆର୍ଟସ୍‌ର ସର୍ବଭାରତୀୟ ଚିତ୍ର ପ୍ରଦର୍ଶନୀରେ ତାଙ୍କର ତୈଳଚିତ୍ର **ଯମଜ** (୧୯୬୬) ମଧ୍ୟ ପୁରସ୍କୃତ ହୁଏ।

୧୯୬୭ ମସିହାରେ ଦିନନାଥ ବକ୍‌ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟ (ବିଜେବି କଲେଜ)ରୁ ବି.ଏ. ପରୀକ୍ଷାରେ ଡ଼ିଷ୍ଟିଙ୍କସନ୍ ସହ ପାସ୍ କରନ୍ତି। ସେହିବର୍ଷ ସେ ବିବାହ କରନ୍ତି ବାଲେଶ୍ୱରର ଅବନ୍ତୀ ମହାପାତ୍ରଙ୍କୁ। ୧୯୬୯ ମସିହାରେ ଦିନନାଥଙ୍କ ପରିକଳ୍ପିତ **ଓ୍ୱାର୍କିଙ୍ଗ୍ ଆର୍ଟିଷ୍ଟସ୍ ଆସୋସିଏସନ୍ ଅଫ୍ ଓଡ଼ିଶା** (ଓ୍ୱା) ଅନୁଷ୍ଠାନ ବିଧିବଦ୍ଧ ରୂପ ନେଲା ୧୯୭୩ ମସିହାରେ। ଏହି ଅନୁଷ୍ଠାନର ଉଦ୍ଦେଶ୍ୟ ଥିଲା ସର୍ବଭାରତୀୟ ଆଧୁନିକ କଳା ପରିପ୍ରେକ୍ଷୀରେ ଓଡ଼ିଆ ଆଧୁନିକତାର ଶିଷ୍ଟ ସ୍ୱରକୁ ଉଜ୍ଜୀବିତ କରିବା। କଳାଶିକ୍ଷାର ସୁଯୋଗ ଦେବା ଉଦ୍ଦେଶ୍ୟରେ ଅସିତ ମୁଖାର୍ଜୀ, ଅସୀମ ବସୁ, ଉଦୟନାରାୟଣ ଜେନା ପ୍ରଭୃତି ଓଡ଼ିଶାର ବିଶିଷ୍ଟଶିଳ୍ପୀଙ୍କୁ ନେଇ ୧୯୭୦ ମସିହାରେ

ଭୁବନେଶ୍ୱରରେ ବେସରକାରୀ ସ୍ତରରେ ଚିତ୍ରମ୍ ନାମକ କଳା ବିଦ୍ୟାଳୟ ପ୍ରତିଷ୍ଠା ଦିନନାଥଙ୍କ ଏକ ପ୍ରଶଂସନୀୟ ଅବଦାନ।

୧୯୭୨ ମସିହାରେ ଦିନନାଥ ଘରୋଇ ପରୀକ୍ଷାର୍ଥୀ ଭାବେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଇତିହାସ ଏମ୍.ଏ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୁଅନ୍ତି। ସେହିବର୍ଷ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଚାରୁ ଓ କାରୁକଳା ବିଭାଗର ସଂଗ୍ରହାଧ୍ୟକ୍ଷ (Curator) ଭାବେ ସେ ଯୋଗ ଦିଅନ୍ତି। ତାଙ୍କର ଦିଗ୍‌ଦର୍ଶନରେ ଉକ୍ତ ବିଭାଗର ପ୍ରଭୂତ ଉନ୍ନତି ସାଧିତ ହୁଏ। କ୍ୟୁରେଟର ଥିବାବେଳେ ଓଡ଼ିଶାର ବିଭିନ୍ନ ଅଞ୍ଚଳର କଳାକୃତି ପଞ୍ଜୀକରଣ, ୧୯୭୫ ମସିହାରେ ତୃତୀୟ ଆଞ୍ଚଳିକ ସାଂସ୍କୃତିକ ଉତ୍ସବରେ ଓଡ଼ିଶା ମଣ୍ଡପର ନକ୍‌ସାକାର, ୧୯୭୭ ମସିହାରେ ଦିଲ୍ଲୀଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ବାଣିଜ୍ୟ ମେଳାରେ ଓଡ଼ିଶା ପ୍ରଦର୍ଶନୀ ମଣ୍ଡପର ନକ୍‌ସା ପ୍ରସ୍ତୁତି ଓ ସଜ୍ଜୀକରଣରେ ନୂତନତ୍ୱ ଆଣିବା ପ୍ରଭୃତି ଥିଲା ତାଙ୍କର ଉଲ୍ଲେଖଯୋଗ୍ୟ କୃତିତ୍ୱ। ୧୯୭୮ ମସିହାରେ ସ୍ୱିଜରଲାଣ୍ଡର ଜୁରିକ୍‌ଠାରେ ଥିବା ରିଟ୍‌ବର୍ଗ ସଂଗ୍ରହାଳୟରେ ଓଡ଼ିଶାର କଳା ଓ ସଂସ୍କୃତି ସମ୍ବନ୍ଧୀୟ ଆନ୍ତର୍ଜାତିକ ପ୍ରଦର୍ଶନୀ ଆୟୋଜନର ଜଣେ ସହଯୋଗୀ ଭାବେ ଦିନନାଥଙ୍କୁ ବିଦେଶ ଗସ୍ତର ପ୍ରଥମ ସୁଯୋଗ ମିଳେ। ଏହି ପ୍ରଦର୍ଶନୀ ପାଇଁ ପ୍ରକାଶିତ ହେବାକୁ ଥିବା ଗ୍ରନ୍ଥର ଯୁଗ୍ମ ଲେଖକ ଡ଼କ୍ଟର ଏବରହାର୍ଡ଼ ଫିସର ଓ ଡ଼କ୍ଟର ସୀତାକାନ୍ତ ମହାପାତ୍ରଙ୍କ ସହଯୋଗୀ ଭାବେ ସେ ନିଜ ବୁଦ୍ଧିମତ୍ତା ତଥା ନିପୁଣତାର ପରିଚୟ ଦିଅନ୍ତି। ବିଦେଶର

ସଂଗ୍ରହାଳୟମାନଙ୍କରେ ଓଡ଼ିଶୀ କଳାର ଚିହ୍ନଟ ପାଇଁ ସେ ଜର୍ମାନୀ, ଫ୍ରାନ୍ସ, ଇଟାଲୀ, ଗ୍ରୀସ୍, ଇଂଲଣ୍ଡ ପ୍ରଭୃତି ଇଉରୋପୀୟ ଦେଶ ପରିଭ୍ରମଣ କରି ଆନ୍ତର୍ଜାତିକ ସ୍ୱୀକୃତି ଲାଭ କରନ୍ତି।

୧୯୭୯ ମସିହାରେ ଦିନନାଥ ଓଡ଼ିଶା ରାଜ୍ୟ ସଂଗ୍ରହାଳୟରୁ କର୍ମାନ୍ତ ପ୍ରେରଣରେ ଆସି ନବଗଠିତ ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ ନିଗମ (OTDC)ର ପ୍ରଚାର ଓ ପ୍ରକାଶନ ବିଭାଗର ପ୍ରଭାଗୀୟ ପରିଚାଳକ ଭାବେ ଦାୟିତ୍ୱ ଗ୍ରହଣ କରନ୍ତି। ଏହି ସମୟରେ ଓଡ଼ିଶାରେ ଓ ଓଡ଼ିଶା ବାହାରେ ବିଭିନ୍ନ ପ୍ରଦର୍ଶନୀର ଆୟୋଜନ, ରଙ୍ଗୀନ ପର୍ଯ୍ୟଟନ ପ୍ରଚାର ପୁସ୍ତିକାର ନକ୍ସା ପ୍ରସ୍ତୁତି ଓ ମୁଦ୍ରଣ, ଓଡ଼ିଶାର ଚାରୁକଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ ପ୍ରଭୃତି ସମ୍ପର୍କରେ ପର୍ଯ୍ୟଟକମାନଙ୍କ ଅବଗତି ନିମନ୍ତେ ଚିତ୍ରବାରମାସୀ ପ୍ରଦର୍ଶନୀର ଆୟୋଜନ ପ୍ରଭୃତି ତାଙ୍କର ବିଭିନ୍ନ ପଦକ୍ଷେପ ଓଡ଼ିଶାର ପର୍ଯ୍ୟଟନ ବିକାଶରେ ନୂତନତ୍ୱ ଆଣିଥିଲା। ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ ନିଗମକୁ ପ୍ରଗତିଶୀଳ ଓ ବିଶ୍ୱାଭିମୁଖୀ କରିବା ପାଇଁ ମଧ୍ୟ ସେ ଉଦ୍ୟମ କରିଥିଲେ।

ଦିନନାଥ ପାଠୀ ଓଡ଼ିଶାର ପାରମ୍ପରିକ ଚିତ୍ରକଳା ସମ୍ପର୍କରେ ଗବେଷଣା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ୧୯୮୧ ମସିହାରେ ପି.ଏଚ୍.ଡ଼ି ଡ଼ିଗ୍ରୀ ଲାଭ କରନ୍ତି।୧୯୮୨ ମସିହାରେ ଭୁବନେଶ୍ୱରରେ ପ୍ରତିଷ୍ଠିତ କେଦାରନାଥ ଗବେଷଣା ପ୍ରତିଷ୍ଠାନର ସେ ଥିଲେ ପ୍ରତିଷ୍ଠାତା ସଭ୍ୟ। ୧୯୮୪ ମସିହାରେ ଭୁବନେଶ୍ୱରରେ ନବ ପ୍ରତିଷ୍ଠିତ ବିଭୂତି କାନୁନ୍‌ଗୋ ଚାରୁ ଓ

କାରୁକଳା ମହାବିଦ୍ୟାଳୟରେ ସେ ୧୦ ବର୍ଷରୁ ଊର୍ଦ୍ଧ୍ୱକାଳ ଅଧ୍ୟକ୍ଷ ରୂପେ ଦାୟିତ୍ୱ ବହନ କରି ନିଜ ସାଙ୍ଗଠନିକ ଓ ପ୍ରଶାସନିକ ଦକ୍ଷତା ପ୍ରତିପାଦନ କରିଛନ୍ତି। ଡ଼କ୍ଟର ପାଠୀ ଉକ୍ତ ମହାବିଦ୍ୟାଳୟରେ କଳା ଇତିହାସ ଅଧ୍ୟୟନ ପାଇଁ ଏକ ସ୍ୱତନ୍ତ୍ର ବିଭାଗ ସୃଷ୍ଟି, ଚିତ୍ରମେଳା ଓ ବାର୍ଷିକ ଚିତ୍ରକଳା ପ୍ରଦର୍ଶନୀ, ପାରମ୍ପରିକ ଶିଳ୍ପୀଙ୍କ କର୍ମଶାଳା, କଳା ଓ ନାନ୍ଦନିକତାର ଗବେଷଣା ପତ୍ରିକା ଚିତ୍ରର ପ୍ରକାଶନ ଏବଂ ଶିଳ୍ପ ବକ୍ତୃତାମାଳାର ଆୟୋଜନ କରି କଳାଶିକ୍ଷାର ନବ ଦିଗନ୍ତ ଉନ୍ମୋଚନ କରିଛନ୍ତି। ସେ ମଧ୍ୟ ଏହି ମହାବିଦ୍ୟାଳୟରେ **ଓଡ଼ିଶାର ସାଂପ୍ରତିକ କଳା ଓ କଳାକାର** ଏବଂ **ଆଦିବାସୀ କଳା: ଆଦିମତା ଓ ଆଧୁନିକତା** ବିଷୟକ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଜାତୀୟ ପାଠଚକ୍ରର ଆୟୋଜନ କରିଛନ୍ତି। ଏହା ବ୍ୟତୀତ ଏହି ସମୟରେ ଭାରତ ସରକାରଙ୍କ ସଂସ୍କୃତି ମନ୍ତ୍ରଣାଳୟର ଆନ୍ତର୍ଜାତିକ କଳାପ୍ରକଳ୍ପ – **ଭାରତ ଉତ୍ସବ** କାର୍ଯ୍ୟକ୍ରମର କମିଶନର ଓ ଡିଜାଇନର, ଆନ୍ତର୍ଜାତିକ କଳିଙ୍ଗ ବାଲିଯାତ୍ରାର ଭିଜୁଏଲାଇଜର ଓ କ୍ୟୁରେଟର, ଆନ୍ତର୍ଜାତିକ ସପ୍ତମ ତ୍ରିବାର୍ଷିକୀ ଭାରତ କଳା ପ୍ରଦର୍ଶନୀରେ ଭାରତର କମିଶନର, ଆନ୍ତର୍ଜାତିକ ଗ୍ରାଫିକ୍ କର୍ମଶାଳାର ଆବାହକ, ଲଣ୍ଡନର କଳା ମହାବିଦ୍ୟାଳୟ ଓ କଳା ସଂଗ୍ରହାଳୟ ପରିଦର୍ଶନ ପାଇଁ ବ୍ରିଟିଶ୍ କାଉନ୍‌ସିଲ୍ ଫେଲୋସିପ୍ ଏବଂ ଭିକ୍ଟୋରିଆ ଆଣ୍ଡ ଆଲ୍‌ବର୍ଟ୍ ମ୍ୟୁଜିୟମ୍ ଫେଲୋସିପ୍ ପ୍ରାପ୍ତ, ଓଡ଼ିଶା ଇତିହାସ କଂଗ୍ରେସର ସ୍ଥାନୀୟ ସମ୍ପାଦକ (Local Secretary) ଭାବେ ବାର୍ଷିକ

ବୈଠକର ଆୟୋଜନ, ଏନ୍.ସି.ଇ.ଆର୍.ଟି. (National Council of Educational Research and Training) ଆନୁକୂଲ୍ୟରେ ଆୟୋଜିତ ପ୍ରଥମ ସର୍ବଭାରତୀୟ ଚିତ୍ରଶିକ୍ଷକ ଶିବିର, ସି.ସି.ଆର.ଟି (Centre for Cultural Resources and Training) ଦ୍ୱାରା ଆୟୋଜିତ ସର୍ବଭାରତୀୟ ସଂସ୍କୃତି ପ୍ରଶିକ୍ଷଣ ଶିବିର, ରାଜ୍ୟସ୍ତରୀୟ କଳା ଓ ପରିବେଶ (Art and Environment) କର୍ମଶାଳା, ସୁଇଡ଼େନ୍ ଓ ପ୍ରାକ୍ତନ ସୋଭିଏତ ସଂଘ (Soviet Union)ରେ ଇଣ୍ଡିଆନ୍ ପପୁଲାର୍ ଆର୍ଟ ପ୍ରଦର୍ଶନୀର ଆୟୋଜନ ଓ ତତ୍‌ସଂପର୍କୀୟ କଳା ସାମଗ୍ରୀ ସଂଗ୍ରହ ପାଇଁ ଭାରତବର୍ଷର ସମସ୍ତ କଳାକେନ୍ଦ୍ର ପରିଭ୍ରମଣ ଓ ଭାରତୀୟ ଶିଳ୍ପୀ ପ୍ରତିନିଧିମାନଙ୍କ ନେତୃତ୍ୱ ନେବା ପ୍ରଭୃତି କାର୍ଯ୍ୟକ୍ରମ ଡ଼କ୍ଟର ଦିନନାଥ ପାଠୀଙ୍କ ସାଧନା ଓ ସିଦ୍ଧି, କୃତି ଓ କୀର୍ତ୍ତିର ଉଜ୍ଜ୍ୱଳ ନିଦର୍ଶନ ବହନ କରିଛି। ଏସବୁ କୃତିତ୍ୱ ହେତୁ ତାଙ୍କୁ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ମିଳିଛି ଗୌରବମୟ ସ୍ୱୀକୃତି; ଏଥିସହ ଓଡ଼ିଶାର ମର୍ଯ୍ୟାଦା ମଧ୍ୟ ସ୍ୱୀକୃତ ହୋଇଛି।

୧୯୮୮ମସିହାରେ ଅବିଭକ୍ତ ଭାରତର ସର୍ବପ୍ରାଚୀନ କଳା ଅନୁଷ୍ଠାନ ଅଲ୍ ଇଣ୍ଡିଆ ଫାଇନ୍ ଆର୍ଟସ୍ ଆଣ୍ଡ କ୍ରାଫଟ୍‌ସ୍ ସୋସାଇଟିର ହୀରକ ଜୟନ୍ତୀ ଉପଲକ୍ଷେ ଅନୁଷ୍ଠିତ ସର୍ବଭାରତୀୟ ଚିତ୍ରକଳା ପ୍ରଦର୍ଶନୀରେ ତାଙ୍କର ଜଳରଙ୍ଗର ଚିତ୍ର ଶ୍ରୀରାଧା ପାଇଁ ଭାରତର ରାଷ୍ଟ୍ରପତିଙ୍କଠାରୁ ଡ଼କ୍ଟର ଦିନନାଥ ପାଠୀ ରଜତ ଫଳକ ପାଇଥିଲେ। ସେହିବର୍ଷ ସେ କେନ୍ଦ୍ର ଲଳିତ କଳା ଏକାଡ଼େମୀର

ବାର୍ଷିକ ସର୍ବଭାରତୀୟ ପ୍ରଦର୍ଶନୀର ଜୁରି ମନୋନୀତ ହୋଇଥିଲେ। ୧୯୮୯ ମସିହାରେ ସେ କେନ୍ଦ୍ର ଲଳିତକଳା ଏକାଡେ଼ମୀର କାର୍ଯ୍ୟନିର୍ବାହୀ ପରିଷଦର ସଭ୍ୟ ନିର୍ବାଚିତ ହୁଅନ୍ତି। ୧୯୯୧ ମସିହାରେ ବିଶ୍ୱଭାରତୀ (ଶାନ୍ତିନିକେତନ)ରୁ କଳା ଇତିହାସରେ ସେ ପ୍ରଥମ ଓଡ଼ିଆ ଶିଳ୍ପୀ ଭାବେ ପି.ଏଚ୍.ଡ଼ି ଡ଼ିଗ୍ରୀ ହାସଲ କରନ୍ତି। ଏହିପରି ଉତ୍କଳ ବିଶ୍ୱବିଦ୍ୟାଳୟ ଓ ବିଶ୍ୱଭାରତୀରୁ ସେ ଦୁଇ ଦୁଇଟି ପି.ଏଚ୍.ଡ଼ି ଡ଼ିଗ୍ରୀ ପାଇଛନ୍ତି।

୧୯୯୨ ମସିହାରେ କାଏରୋଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଚିତ୍ରକଳା ପ୍ରଦର୍ଶନୀରେ ଭାରତର କମିଶନର ଏବଂ ଦିଲ୍ଲୀଠାରେ ଅନୁଷ୍ଠିତ ହୋଇଥିବା ଅପ୍‌ନା ଉତ୍ସବରେ ଓଡ଼ିଶା ପକ୍ଷରୁ ସର୍ଜନାତ୍ମକ ନିର୍ଦ୍ଦେଶକ ଭାବେ ଡ଼କ୍ଟର ପାଠୀ ମନୋନୀତ ହୋଇଥିଲେ। ୧୯୯୪ରେ ବିଭୂତି କାନୁନ୍‌ଗୋ ଚାରୁ ଓ କାରୁକଳା ମହାବିଦ୍ୟାଳୟର ଅଧ୍ୟକ୍ଷ ପଦରୁ ଅବ୍ୟାହତି ନେଇ ଡ଼କ୍ଟର ପାଠୀ ପ୍ରଥମ ଓଡ଼ିଆ ଭାବେ କେନ୍ଦ୍ର ଲଳିତକଳା ଏକାଡେ଼ମୀର ସଚିବ ଦାୟିତ୍ୱ ବହନ କରନ୍ତି। ଏକାଡେ଼ମୀର ପ୍ରଶାସନିକ ଓ ପରିଚାଳନାଗତ କାର୍ଯ୍ୟଧାରାରେ ସଂସ୍କାର ଆନୟନ, ରାଷ୍ଟ୍ରୀୟ କଳାମେଳାର ଭବ୍ୟ ଆୟୋଜନ, ସୃଜନ କଳାର ବିସ୍ତାର, କଳା ଇତିହାସ ଗବେଷଣାରେ ବୃତ୍ତି ପ୍ରଦାନ, ଯୁବଶିଳ୍ପୀଙ୍କ ମଧ୍ୟରେ ଆଧୁନିକ ଚିତ୍ରକଳାର ପ୍ରଚାର ଓ ପ୍ରସାର ଆଦି ନୂତନ କାର୍ଯ୍ୟକ୍ରମ ଆରମ୍ଭ, ୧୯୯୫ରେ ଜାପାନ ପରିଭ୍ରମଣ ଓ ସେଠାରେ ଏକକ ଚିତ୍ର ପ୍ରଦର୍ଶନୀରେ ଅଂଶଗ୍ରହଣ

ପ୍ରଭୃତି ତାଙ୍କ କଳାତ୍ମକ ପ୍ରତିଭା ଓ ପ୍ରଶାସନିକ ଦକ୍ଷତାର ଯଥାଯଥ ଗୌରବ ପ୍ରକଟିତ କରେ। ଏହିବର୍ଷ ନିଜର ପ୍ରାକ୍ତନଛାତ୍ର ଓ ଛାତ୍ରୀଙ୍କୁ ନେଇ ଦିଲ୍ଲୀ ରବୀନ୍ଦ୍ରଭବନ ଚିତ୍ରବୀଥିରେ ଚିତ୍ର ପ୍ରଦର୍ଶନୀ Beyond the Shoresର ଆୟୋଜନ। ଓଡ଼ିଶା ବାହାରେ ଏହା ଓଡ଼ିଆ ଯୁବଶିଳ୍ପୀଙ୍କ ପ୍ରଥମ ସର୍ବବୃହତ୍ ଚିତ୍ରପ୍ରଦର୍ଶନୀ **ଚିତ୍ରକାରମାନଙ୍କ ଶାଳ ଓ ଶୈଳୀ (Art of Renewal)** ସମ୍ପର୍କରେ ଗବେଷଣା କରିବା ପାଇଁ ସେ ଜବାହାରଲାଲ୍ ନେହେରୁ ଫେଲୋସିପ୍ ପାଆନ୍ତି। ଏଭଳି ସମ୍ମାନ ପାଇବାରେ ସେ ହେଉଛନ୍ତି ପ୍ରଥମ ଓଡ଼ିଆ ଗବେଷକ। ୧୯୯୮ ମସିହାରେ ବେଇଜିଙ୍ଗ୍‌ଠାରେ ଅନୁଷ୍ଠିତ ଚୀନ ବିଶ୍ୱକଳା ପ୍ରଦର୍ଶନୀ (98 International China Exposition)ରେ ଅଂଶଗ୍ରହଣ କରି ଆନ୍ତର୍ଜାତିକ ପୁରସ୍କାର ଗ୍ରହଣ କରିଛନ୍ତି।

ଡ଼କ୍ଟର ପାଠୀ ୧୯୯୯ ମସିହାରେ ସରକାରୀ ଚାକିରିରୁ ସ୍ୱେଚ୍ଛାକୃତ ଅବସର ନେଇ ୨୦୦୦ ମସିହାରେ ବାରାଣସୀ ଠାରେ ସ୍ଥାପିତ ଆଲିସ୍ ବୋନର ସୁଇସ୍ ଗବେଷଣା ପ୍ରତିଷ୍ଠାନର ନିର୍ଦ୍ଦେଶକ ଭାବେ କାର୍ଯ୍ୟଭାର ଗ୍ରହଣ କରନ୍ତି। ଦକ୍ଷିଣ ଓଡ଼ିଶାର ପ୍ରମୁଖ ସାହିତ୍ୟ ଅନୁଷ୍ଠାନ **କଳିଙ୍ଗ ସାହିତ୍ୟ ସମାଜ** ୨୦୦୦ ମସିହା ସେପ୍ଟେମ୍ବର ୧୧ ତାରିଖ ଦିନ ଡ଼କ୍ଟର ପାଠୀଙ୍କୁ **ଭଞ୍ଜ ଭାରତୀ ସମ୍ମାନ** ପ୍ରଦାନ କରନ୍ତି। ସେ ୨୦୦୧ ମସିହାରେ ଅଲ୍ ଇଣ୍ଡିଆ ଫାଇନ୍ ଆର୍ଟସ ଓ କ୍ରାଫ୍ଟସ୍ ସୋସାଇଟି ଦ୍ୱାରା **କଳାଶ୍ରୀ** ଉପାଧିରେ ଭୂଷିତ ହୁଅନ୍ତି।

ସେ ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ର ପକ୍ଷରୁ ୨୦୧୧ ମସିହାରେ **ଉତ୍କଳପ୍ରଜ୍ଞା ସମ୍ମାନ**, ଅନନ୍ୟ ଶ୍ରୀ ଜଗନ୍ନାଥ ସଂସ୍ଥାନ ପକ୍ଷରୁ **ସୁଦର୍ଶନ ସମ୍ମାନ**, ଆମେ ଓଡ଼ିଆ ପରିବାରର **ଆମେ ଓଡ଼ିଆ ସମ୍ମାନ** ମଧ ପାଇଛନ୍ତି । ଆନନ୍ଦପୁର ପ୍ରଜ୍ଞାଶ୍ରୀ ସାଂସ୍କୃତିକ ପରିଷଦ ତାଙ୍କୁ **ପ୍ରଜ୍ଞାଶ୍ରୀ ସମ୍ମାନ**ରେ ଭୂଷିତ କରିଛି । କେନ୍ଦ୍ରାପଡ଼ା ପୁନର୍ନବା ସାହିତ୍ୟ ସଂସଦ **ରଙ୍ଗ-ରେଖା-ଲେଖା ସମ୍ମାନ**ରେ ସମ୍ବର୍ଦ୍ଧିତ କରିଥିବା ବେଳେ ଲକ୍ଷ୍ନୌ ଓଡ଼ିଆ ସମାଜ, ଗୋଦାବରୀଶ ସାହିତ୍ୟ ସଂସଦ, ଭୁବନେଶ୍ୱର ସାହିତ୍ୟ ସମାଜ, ଉତ୍କଳ ସାହିତ୍ୟ ସମାଜ, ବାଲେଶ୍ୱରର ଚନ୍ଦ୍ରଭାଗା ସାହିତ୍ୟ ସଂସ୍ଥା, **କ ସମ୍ମାନ**, ବିଭୂତି କାନୁନ୍‌ଗୋ ଚାରୁକଳା ମହାବିଦ୍ୟାଳୟରୁ **ରଜତ ଲେଖନୀ ସମ୍ମାନ** (୨୦୦୯) ଏବଂ ଆମେରିକାର ଓସା ଅନୁଷ୍ଠାନ (୨୦୧୩) ପକ୍ଷରୁ ସେ ତାଙ୍କର ସୃଜନ ପ୍ରତିଭା ପାଇଁ ବିଭିନ୍ନ ସମୟରେ ପୁରସ୍କୃତ ଓ ସମ୍ମାନୀତ । ସମ୍ମାନପ୍ରାପ୍ତିର ତାଲିକା ଖୁବ୍ ଦୀର୍ଘ । ଏଠାରେ କେତୋଟି ନିର୍ବାଚିତ ନାମହିଁ ଉଲ୍ଲେଖ କରାଯାଇଛି ।

ଓଡ଼ିଶା ସରକାରଙ୍କ ଅନୁରୋଧ କ୍ରମେ ଡକ୍ଟର ପାଠୀ ୨୦୦୩ ମସିହାରେ ଲଳିତକଳା ଏକାଡ଼େମୀର ସଭାପତି କାର୍ଯ୍ୟଭାର ଗ୍ରହଣ କରନ୍ତି । ସଭାପତି ଭାବେ ମାତ୍ର ଦୁଇବର୍ଷ ମଧରେ ଏବଂ ଏକାଡ଼େମୀର ଆର୍ଥିକ ଦୁରବସ୍ଥା ସତ୍ତ୍ୱେ ବରିଷ୍ଠ ଓ ବିଶିଷ୍ଟ ଶିଳ୍ପୀ ଅଜିତ କେଶରୀ ରାୟ, ଚିତ୍ରକର ଓ ଲେଖକ ପ୍ରଫୁଲ୍ଲ ମହାନ୍ତି ଏବଂ କବି ଓ କଳା ଐତିହାସିକ ଜଗନ୍ନାଥ ପ୍ରସାଦ ଦାସଙ୍କ

ଜୀବନୀ ଓ କୃତି ସଂପର୍କୀୟ ତିନୋଟି ମନୋଗ୍ରାଫ୍ (Odishan Art and Artists Seriesର ୬, ୭ ଓ ୮) ପ୍ରକାଶନ, ଓଡ଼ିଶା ଲଳିତ କଳା ଏକାଡ଼େମୀର ପ୍ରଥମ କରି ରଙ୍ଗିନ୍ ସୂଚନା ପୁସ୍ତିକା, ସମ୍ବାଦ ଇସ୍ତାହାର ପତ୍ର (News Letter), ଓଡ଼ିଶା ଶିଳ୍ପୀଙ୍କ ପଞ୍ଜିକା ଏବଂ ଏକାଡ଼େମୀ କଳାକୃତିର ପ୍ରଥମ ତାଲିକା (Catalogue) ପ୍ରକାଶନ, ଭୁବନେଶ୍ୱରରେ ପ୍ରବାସୀ ଓଡ଼ିଆ ଶିଳ୍ପୀଙ୍କ ଚିତ୍ର ପ୍ରଦର୍ଶନୀ ଆୟୋଜନ, ଓଡ଼ିଶା ମ୍ୟୁଜିୟମ ଅଫ୍ ମଡ଼ର୍ଣ୍ଣ ଆର୍ଟ (OMOMA)ର ପରିକଳ୍ପନା, ଶିଳ୍ପୀ ଗୋପାଳ ଚରଣ କାନୁନ୍‌ଗୋଙ୍କ ଜନ୍ମ ଶତବାର୍ଷିକୀ ପାଳନ ଏବଂ ତାଙ୍କ ବୁଦ୍ଧ ଓ ଉପଗୁପ୍ତ ଚିତ୍ରର ପୋଷ୍ଟର ପ୍ରକାଶନ, ଏକାଡ଼େମୀର ପ୍ରଥମ କଳାମେଳା ତଥା ଆର୍ଟଥେରାପି କର୍ମଶାଳାର ଅୟୋଜନ ପ୍ରଭୃତି ଡ଼କ୍ଟର ପାଠୀଙ୍କର ଗୌରବମୟ କୃତିତ୍ୱ । [୪]

୨୦୦୬ ମସିହାରେ ଭୁବନେଶ୍ୱରସ୍ଥ ପ୍ରସିଦ୍ଧ କେଦାରନାଥ ଗବେଷଣା ପ୍ରତିଷ୍ଠାନର ରଜତ ଜୟନ୍ତୀ ଅବସରରେ ଡ଼କ୍ଟର ପାଠୀ ଉକ୍ତ ଅନୁଷ୍ଠାନ ଦ୍ୱାରା ସମ୍ବର୍ଦ୍ଧିତ ହୋଇଥିଲେ । ସେହି ବର୍ଷ ଖଲ୍ଲିକୋଟ ଚାରୁ ଓ କାରୁକଳା ମହାବିଦ୍ୟାଳୟର ସ୍ୱର୍ଣ୍ଣ ଜୟନ୍ତୀ ଉତ୍ସବରେ ସେ **ଛାତ୍ରଗୌରବ ସମ୍ମାନ** ଲାଭ କରିଥିଲେ । ୨୦୦୮ ମସିହାରେ କୁଆଲାଲୁମ୍ପୁର ଚତୁର୍ଥ ଆନ୍ତର୍ଜାତିକ ଓଡ଼ିଶୀ ନୃତ୍ୟ ଉତ୍ସବ Stirring Odissi ଉପଲକ୍ଷ୍ୟେ ଅନୁଷ୍ଠିତ ଆନ୍ତର୍ଜାତିକ ଚିତ୍ର ପ୍ରଦର୍ଶନୀର କ୍ୟୁରେଟର ଭାବେ ଡ଼କ୍ଟର ପାଠୀ ଉଚ୍ଚ ପ୍ରଶଂସିତ ହୋଇଥିଲେ । ସେ ମଧ୍ୟ ଭୁବନେଶ୍ୱରରେ ପ୍ରତିଷ୍ଠିତ ଦକ୍ଷିଣ ଓଡ଼ିଶା

ଉନ୍ନୟନ ପରିଷଦ (କଳା, ସାହିତ୍ୟ, ସଂସ୍କୃତି ଓ ଜନଜୀବନର ପ୍ରତିବଦ୍ଧତା) ଓ ତା'ର ମୁଖପତ୍ର **ଦକ୍ଷିଣାବର୍ତ୍ତ**ର ଉପଦେଷ୍ଟା ମଣ୍ଡଳୀର ପ୍ରମୁଖ ସଭ୍ୟ ଅଛନ୍ତି।

ଜଣେ ଉଚ୍ଚକୋଟୀର ସାହିତ୍ୟିକ ଓ ସମାଲୋଚକ ଭାବେ ଡକ୍ଟର ପାଠୀଙ୍କ ପ୍ରଚଣ୍ଡ ପ୍ରତିଭା ଅବିସମ୍ବାଦିତ। ସାହିତ୍ୟ ସର୍ଜନାରେ ସେ ବାଙ୍ଗମୟ। ତାଙ୍କର ସାରସ୍ୱତ କୃତି ବିପୁଳ, ବିବିଧ ତଥା ବହୁମୁଖୀ। ସେ ଅନେକ ଉପନ୍ୟାସ, ଗଳ୍ପ, ଭ୍ରମଣ କାହାଣୀ, ଜୀବନୀ ଓ କବିତା ରଚନା କରି ଓଡ଼ିଆ ସାହିତ୍ୟ ଜଗତକୁ ଜ୍ୟୋତିଷ୍ମାନ୍ କରିପାରିଛନ୍ତି। ଇଂରାଜୀ ଓ ଜର୍ମାନୀ ଭାଷାରେ ତାଙ୍କର ଚିତ୍ରକଳା ଭିତ୍ତିକ (Art - Historical) ୩୫ରୁ ଊର୍ଦ୍ଧ୍ୱ ପୁସ୍ତକ ଦେଶ ବିଦେଶରୁ ପ୍ରକାଶିତ ହୋଇଛି। ଏକାଧିକ ପ୍ରଦର୍ଶନୀ ପୁସ୍ତିକା (Catalogue) ପ୍ରଣୟନକରି ବହୁ ଓଡ଼ିଆ ଶିଳ୍ପୀଙ୍କୁ ଲୋକଲୋଚନକୁ ଆଣିପାରିଛନ୍ତି। ଓଡ଼ିଆ ଓ ଇଂରାଜୀ ଭାଷାରେ ଲିଖିତ ତାଙ୍କର ଅନେକ ପ୍ରବନ୍ଧ ରାଜ୍ୟ, ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରର ବହୁ ମର୍ଯ୍ୟାଦା ସଂପନ୍ନ ପତ୍ର ପତ୍ରିକାର ପୃଷ୍ଠାମଣ୍ଡନ କରିଛି। ଏହି ଗବେଷଣାମୂଳକ ପ୍ରବନ୍ଧଗୁଡ଼ିକ ମୌଳିକ ଚିନ୍ତାଧାରା ସଂପନ୍ନ। ପ୍ରତ୍ୟେକ ପ୍ରବନ୍ଧରେ କିଛି ନୂଆ କଥା କୁହାଯାଇଛି, ନୂତନ ଚିନ୍ତାଧାରାର ପରିସ୍ଫୁରଣ ଘଟିଛି, ନୂତନ ତଥ୍ୟର ଅବତାରଣା କରାଯାଇଛି ତଥା ସ୍ୱତନ୍ତ୍ର ମତବାଦ ଓ ନୂତନ ଦୃଷ୍ଟିକୋଣର ପରିଚୟ ମିଳିଛି। କେତେକ ପ୍ରବନ୍ଧରେ ସେ

ଓଡ଼ିଶାର ପାରମ୍ପରିକ, ସାମ୍ପ୍ରତିକ, ଲୋକ, ଆଦିବାସୀ, ସବୁ ବିଭାଗର କଳା ସମ୍ପର୍କରେ ଆଲୋଚନା କରିଛନ୍ତି।

ଡ଼କ୍ଟର ଦିନନାଥ ପାଠୀଙ୍କ ସାରସ୍ୱତ ସୃଷ୍ଟି ସମ୍ଭାର ମଧ୍ୟରେ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** (୧୯୯୦), **ପୁଣ୍ଡିକର୍ୟାଁର ଫକୀର** (୨୦୦୪), **ଚିଲିକା ପାଣିରେ ଛାଇ** (୨୦୦୫), **ରୂପ ଜୀବୀର ଡ଼ାଏରୀ** (୨୦୦୯), **ଗୋଟିଏ କଲେଜ ଗଢ଼ିବାର ବେଳ** (୨୦୧୩) ପ୍ରଭୃତି ଆତ୍ମଜୀବନୀ, **ସାୟୋନାରା** (୧୯୯୮), **ପୁନର୍ନବା** (୧୯୯୯), **ଶ୍ଳୋକଛନ୍ଦ** (୨୦୦୧), **ଗଙ୍ଗା ବତରଣ** (୨୦୦୨), **ଗଛ କୋରଡ଼ରେ ହୃଦୟ** (୨୦୦୬), **ଦିନେ ନ ଡାକିବୁ ଧରମା ବୋଲି** (୨୦୦୯), **ରୂପ ରଙ୍ଗ ଅନଙ୍ଗ** (୨୦୧୦) ଆଦି ଚିତ୍ରୋପନ୍ୟାସ, **ଭବଘୂରା ଭବନାଥ** (୧୯୯୨), **ସୁନାମାଛ** (୧୯୯୬), **ଅଧିବାସ** (୨୦୧୪) ପ୍ରଭୃତି ଗଳ୍ପ ସଂକଳନ, **ନୀଳହ୍ରଦର ଚିତ୍ରକର** (୨୦୦୬) ଓ **ଭୀମକୁଣ୍ଡରେ ମିଚିଗାନ୍‌ର ପ୍ରତିଛବି** (୨୦୧୪) - ଭ୍ରମଣ କାହାଣୀ, **ଚିୟତେ ଇଟି** (୧୯୬୧), **ଚିତ୍ରମାନସ** (୨୦୦୮) ପ୍ରଭୃତି ପ୍ରବନ୍ଧ ଗ୍ରନ୍ଥ ଏବଂ **ଚିତ୍ରଶାଳା** (୨୦୦୦), **ବର୍ଣ୍ଣିଳ ଅପରାହ୍ଣ** (୨୦୧୦), **ଅନ୍ୟଦେଶ** (୨୦୧୩) ଆଦି କବିତା ସଂକଳନ ପ୍ରଣିଧାନ ଯୋଗ୍ୟ। ଚିତ୍ରୋପନ୍ୟାସ ଗଙ୍ଗାବତରଣ ଡ଼କ୍ଟର ଦିଲ୍ଲୀପ କୁମାର ତ୍ରିପାଠୀଙ୍କ ଦ୍ୱାରା ହିନ୍ଦୀରେ ଏବଂ ପୁନର୍ନବା ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତିଙ୍କ ଦ୍ୱାରା ଇଂରାଜୀ ଭାଷାରେ ଅନୁବାଦିତ ହୋଇଛି।

ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ ଓ ପୁଞ୍ଜିକର୍ଯାଁର ଫକୀର ପୁସ୍ତକ ଦ୍ୱୟ ପାଠକଙ୍କୁ ଦିଗପହଣ୍ଡିର ତତ୍କାଳୀନ ସାମାଜିକ ଓ ସାଂସ୍କୃତିକ ଐତିହ୍ୟର ସୂଚନା ଦିଏ। ତଥ୍ୟପୂର୍ଣ୍ଣ ଆଲୋଚନା ଯୋଗୁଁ ଏ ଦୁଇଟି ପୁସ୍ତକ ସୁଖପାଠ୍ୟ। ତାଙ୍କର ବହୁ ଚର୍ଚ୍ଚିତ ଆତ୍ମଜୀବନୀ **ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ** ପାଇଁ ୧୯୯୬ ମସିହାରେ ଡ଼କ୍ଟର ପାଠୀ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାରରେ ସମ୍ମାନୀତ ହୋଇଛନ୍ତି। ଏହି ପୁସ୍ତକକୁ ପ୍ରଫେସର ନିରଞ୍ଜନ ମହାନ୍ତି ଇଂରାଜୀ ଭାଷାରେ ଅନୁବାଦ କରିଛନ୍ତି। ଏହାରି ଦୁଇଟି ସଂସ୍କରଣ ପ୍ରକାଶିତ ହୋଇସାରିଲାଣି। **ପୁଞ୍ଜିକର୍ଯାଁର ଫକୀର** ଡ଼କ୍ଟର ପାଠୀଙ୍କ ନନା ଗାନ୍ଧିବାଦୀ ଶ୍ୟାମସୁନ୍ଦର ପାଠୀଙ୍କ ଜୀବନ ଦର୍ଶନ ତଥା ପରିପୂର୍ଣ୍ଣ ଏବଂ ଘଟଣାବହୁଳ ଜୀବନ କାହାଣୀ। ଏହି ଦୁଇଟି ବହି ଯଥାକ୍ରମେ ଡ଼କ୍ଟର ଶଙ୍କରଲାଲ୍ ପୁରୋହିତ ଓ ଡ଼କ୍ଟର ଅନି ରାୟଙ୍କ ଦ୍ୱାରା ହିନ୍ଦୀରେ ଅନୁବାଦିତ। ୧୯୯୮ ମସିହାରେ ପ୍ରକାଶିତ ଡ଼କ୍ଟର ପାଠୀଙ୍କ ପ୍ରଥମ ଚିତ୍ରୋପନ୍ୟାସ **ସାୟୋନାରା** ସ୍ମୃତି ସଜଳ ସ୍ନିଗ୍ଧ ସୁନ୍ଦର କୁସୁମଟିଏ। ସ୍ମୃତିତୀର୍ଥ ଅନୁଭୂତି ତଥା କଳ୍ପନାର ମହଲରେ ଏହା ବେଶ୍ ପ୍ରାଣସ୍ପର୍ଶୀ। ଜାପାନୀ କଳା, ସଂସ୍କୃତି ଓ ସମାଜ ଜୀବନର ରସସ୍ନିଗ୍ଧ ବିଷୟକୁ ଏଥିରେ ମନୋଜ୍ଞ ଭଙ୍ଗୀରେ ଶ୍ରୀ ପାଠୀ ସଂଯୋଜିତ କରିଛନ୍ତି। ଉପନ୍ୟାସରେ ସର୍ବତ୍ର ଲକ୍ଷ୍ୟ କରାଯିବ ଆବେଗଧର୍ମୀ ଭାବାନ୍ତର, ପ୍ରକାଶ ଶୈଳୀର ମଧୁର ତରଙ୍ଗ ଏବଂ ଚିତ୍ରକଳ୍ପଧର୍ମୀ ପ୍ରୟୋଗାତ୍ମକ ଦିଗଟି ଖୁବ୍ ଉଚ୍ଚକୋଟୀର। [୫] **ପୁନର୍ନବା** ଉପନ୍ୟାସରେ ପୌରାଣିକ ଆଖ୍ୟାନ ଓ କାଳ୍ପନିକ କଥାର ପ୍ରୟୋଗ ସେ ଅତି ସୁନ୍ଦର ଭାବେ

ଉପସ୍ଥାପନ କରିଛନ୍ତି । ଅଧ୍ୟାପକ ତଥା ସମାଲୋଚକ ଡ଼କ୍ଟର ହୃଷିକେଶ ପଣ୍ଡାଙ୍କ ପୁନର୍ନବା ଉପନ୍ୟାସର ସମୀକ୍ଷା ଉଚ୍ଚ ପ୍ରଶଂସିତ ହୋଇଛି । ଡ଼କ୍ଟର ପାଠୀଙ୍କ ୨୦୦୦ କବିତା ସଂକଳନ ଚିତ୍ରଶାଳାର କବିତାଗୁଡ଼ିକ ପାଠ କଲାପରେ, କବି ପଦ୍ମବିଭୂଷଣ ସୀତାକାନ୍ତ ମହାପାତ୍ର କହିଛନ୍ତି, ଦିନନାଥ ତମେ ଉପନ୍ୟାସ ଛାଡ଼ି କବିତା କାହିଁକି ଲେଖୁନା ।[୬] ଏହି ସବୁ ସାରସ୍ୱତ କୃତିରୁ ତାଙ୍କର ଅସାଧାରଣ ମନୀଷା ଏବଂ ମୌଳିକ ଚିନ୍ତା ଓ ଚେତନାର ପ୍ରମାଣ ମିଳେ । ଚାରୁ ଓ କାରୁକଳା, ଇତିହାସ, ସାହିତ୍ୟ, ସଂସ୍କୃତି, ପତ୍ନତତ୍ତ୍ୱ କ୍ଷେତ୍ରରେ ଡ଼କ୍ଟର ପାଠୀଙ୍କ ଅବଦାନର ଯଥାର୍ଥ ଅବବୋଧ, ଆକଳନ ଓ ମୂଲ୍ୟାଙ୍କନ ପୂର୍ବକ ରାଜ୍ୟ, ଜାତୀୟ ତଥା ଆନ୍ତର୍ଜାତିକ ବହୁ ଅନୁଷ୍ଠାନ ତାଙ୍କୁ ପୁରସ୍କୃତ ଓ ସମ୍ମାନିତ କରିଛନ୍ତି । କଳା ଓ ସଂସ୍କୃତି ବିଭାଗରେ ଅସାଧାରଣ କୃତିତ୍ୱ ପାଇଁ ଡ଼କ୍ଟର ଦିନନାଥ ପାଠୀ ଓଡ଼ିଶାର ମାନ୍ୟବର ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେଙ୍କ ଠାରୁ ଏ.ଏଲ୍.ବାସମ୍ ସ୍ମୃତି ପୁରସ୍କାର (୧୯୮୬) ରାଜ୍ୟପାଳ ଡ଼କ୍ଟର ଏସ୍.ସି. ଜମିରଙ୍କଠାରୁ ଓଡ଼ିଶା ସିଟିଜେନ୍ ଆୱାର୍ଡ଼ (୨୦୧୩) ଲାଭ କରିଛନ୍ତି ଏବଂ ବିଶ୍ୱସ୍ତରରେ କଳା ଐତିହାସିକ ଗବେଷଣାର ଉତ୍କର୍ଷ ପାଇଁ ମର୍ଯ୍ୟାଦାବନ୍ତ ଆନ୍ତର୍ଜାତିକ ରିଟ୍‌ବର୍ଗ ପୁରସ୍କାର ୧୯୧୪ ପାଇଛନ୍ତି ।

ଡ଼କ୍ଟର ପାଠୀଙ୍କ ଚିତ୍ରକଳା କ୍ଷେତ୍ରରେ ଅସାଧାରଣ କୃତିତ୍ୱ ସଂପର୍କରେ କେତେକ ବିଶିଷ୍ଟ ବ୍ୟକ୍ତିଙ୍କ ମନ୍ତବ୍ୟ ଏଠାରେ ପ୍ରଣିଧାନ ଯୋଗ୍ୟ ।

ସୀତାକାନ୍ତ ମହାପାତ୍ର: ରଙ୍ଗ ତାଙ୍କ ପାଇଁ ଆଉ କେବଳ କାନ୍‌ଭାସ୍‌ର ଓ ତୂଳୀର କଥା ହୋଇନି। ରଙ୍ଗ ସଞ୍ଚରି ଯାଇଛି ଶବ୍ଦଙ୍କୁ - ଶବ୍ଦମାନେ ଧ୍ୱନିତ ହେବା ସଙ୍ଗେ ସଙ୍ଗେ ରଙ୍ଗ ମାଖିଛନ୍ତି।

ଅସୀମ ବସୁ: ଭାରତ ଉତ୍ସବ ପୂର୍ବରୁ ପାଳିତ ହେଉଥିଲେ ବି ଓଡ଼ିଶା ଭଳି ଅବହେଳିତ ରାଜ୍ୟର କୌଣସି ଚିତ୍ରଶିଳ୍ପୀ କେବେ ସେଥିରେ ସାମିଲ ହୋଇ ନଥିଲେ। ଦିନନାଥ ସେ ଥରର ଭାରତ ଉତ୍ସବରେ ଖାଲି ସାମିଲ ହେଲାନି, ପ୍ରଦର୍ଶନୀର ଡ଼ିଜାଇନର୍, କମିଶନର୍ ଓ କ୍ୟୁରେଟର ହେଲା।

ସୌରୀନ୍ଦ୍ର ବାରିକ: ତାଙ୍କ ଲେଖା (ଉଭୟ ଗଦ୍ୟ ଓ ପଦ୍ୟ) ଚିତ୍ରକଳାରେ ରଂଜିତ। ତାଙ୍କ ଲେଖାରେ ରଙ୍ଗର ଧ୍ୱନି। ଚିତ୍ରରେ ଶବ୍ଦର ନୀରବତା।

ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ: ଜଣେ ପ୍ରଖ୍ୟାତ କଳାକାର ଭାବେ ଚାରୁକଳର ପ୍ରଚାର ଓ ପ୍ରସାର କରିବାରେ ଶିଳ୍ପୀ ଡ଼କ୍ଟର ଦିନନାଥ ପାଠୀଙ୍କ ଅବଦାନ ଅତୁଳନୀୟ।

ଶିବ ପାଣିଗ୍ରାହୀ: ତାଙ୍କର କାର୍ଯ୍ୟ ଦକ୍ଷତାରେ ଯେଉଁ ପ୍ରଚଣ୍ଡ ପ୍ରତିଭା ଥିଲା, ମୁଁ କ'ଣ, ଓଡ଼ିଶା ତଥା ସେ ସମୟରେ ଖଲ୍ଲିକୋଟର କୌଣସି ଛାତ୍ର ତାଙ୍କ ସହିତ ସମକକ୍ଷ ହୋଇପାରି ନଥିଲେ।

ଚନ୍ଦ୍ରଶେଖର ରାଓ: ଦିନନାଥ ପାଠୀଙ୍କ ଜଳରଙ୍ଗରେ ଯେତେ ଚମତ୍କାରିତା, ତୈଳଚିତ୍ରରେ ତତୋଧିକ ମାଦକତା। ଛାତ୍ରମାନଙ୍କ ଭିତରେ ସେ ହିଁ ପ୍ରଥମଥର ପାଇଁ ପରୀକ୍ଷାରେ ଗୋଟିଏ ବିଷୟକୁ ଆଧୁନିକ ଶୈଳୀରେ ଅଙ୍କନ କରିବାର ଦୃଢ଼ ପ୍ରୟାସ କରିଥିଲେ।

ଡ଼ି. ନାରାୟଣ ରାଓ: ଅଧ୍ୟାପକ ଅନନ୍ତ ପଣ୍ଡା ସବୁବେଳେ କହନ୍ତି, ପାଠୀ ହେଉଛି ମୋର ପ୍ରଥମ ଛାତ୍ର ଏବଂ ଖୁବ୍ ପ୍ରିୟ ମଧ୍ୟ। ତା' ସହିତ ଟକ୍କର ଦେବାକୁ ଓଡ଼ିଶାରେ ବର୍ତ୍ତମାନ କେହି ନାହାନ୍ତି ଓ ଭବିଷ୍ୟତରେ ନଥିବେ।

ରାମହରି ଜେନା: ଆଜି ଆମ ଓଡ଼ିଆ ଶିଳ୍ପୀଙ୍କ ଜାତୀୟ ସ୍ୱୀକୃତି ପାଇଁ ସେ ସମସ୍ତ ପ୍ରଶଂସାର ଏକମାତ୍ର ଅଧିକାରୀ।

ଅଜିତ କେଶରୀ ରାୟ: କତିପୟ ଉଦାତ୍ତ ଶିଳ୍ପୀ ଯେଉଁମାନେ ଓଡ଼ିଶାର ଆଧୁନିକ ଓ ସାଂପ୍ରତିକ କଳା ଆନ୍ଦୋଳନକୁ ସଂପୂର୍ଣ୍ଣ ଏକ ଭିନ୍ନମୋଡ଼ ଦେଇଛନ୍ତି, ସେମାନଙ୍କ ମଧ୍ୟରେ ସେ (ଦିନନାଥ) ଅନ୍ୟତମ।

ଅନନ୍ତ ପଣ୍ଡା: ମୋ ଜୀବନର ସୂକ୍ଷ୍ମତମ ଅନୁଭବ ଓ ଅସ୍ପୃହା ଦିନନାଥଙ୍କ କୃତି ଓ କୃତିତ୍ୱ ଭିତରେ ସମ୍ଭବ ହୋଇପାରିଥିବାରୁ ମୁଁ ଆନନ୍ଦିତ। ଆମର ଅଧିକାଂଶ ସ୍ୱପ୍ନ ସାକାର ହୋଇଛି ଏବଂ ଷାଠିଏ ଦଶକ ପ୍ରାରମ୍ଭର ଅଭିପ୍ରାୟ ସାର୍ଥକ ହୋଇଛି - ଏହା ମଧ୍ୟ ମୋତେ ଏକା ଭଳି ଆନନ୍ଦ ଦେଉଛି।

କେଦାର ମିଶ୍ର: ଦିଗପହଣ୍ଡିରୁ ଦିଲ୍ଲୀ, ଦିଲ୍ଲୀରୁ ସାରା ପୃଥିବୀ। ଗାଁରୁ ବିଶ୍ୱ। ଓଡ଼ିଶୀ ଚିତ୍ରକଳାକୁ, କଳାର ଇତିହାସକୁ, ତା'ର ଐତିହ୍ୟ ଓ ପରମ୍ପରାକୁ ଗାଁ ସୀମାରୁ ବିଶ୍ୱବାସୀଙ୍କ ଆଗରେ ଉପସ୍ଥାପନ କରିବାର ବିରଳ ସଫଳତା ଚିତ୍ରଶିଳ୍ପୀ ଦିନନାଥ ପାଠୀଙ୍କ ସାର୍ଥକତା। କୋଣାର୍କ ତିଆରି କରିଥିବା ଗୋଟିଏ ଜାତିର ଅଚଳ କଳାବୋଧକୁ ସଚଳ କରିବାର ଶ୍ରେୟ ତାଙ୍କର।

ଚିତ୍ରଶିଳ୍ପୀ ଭାବରେ ଯେଉଁ କେତେଜଣ ଓଡ଼ିଆ ରାଜ୍ୟର ସୀମା ଟପି ଜାତୀୟ ଓ ଆନ୍ତର୍ଜାତୀୟ ସ୍ୱୀକୃତି ପାଇଛନ୍ତି, ସେମାନଙ୍କ ଭିତରେ ଦିନନାଥ ପାଠୀ ଅଗ୍ରଣୀ। ତାଙ୍କର ଛବି, ରଙ୍ଗ, ଲେଖା, ଛାଇ ଓ ଆଲୁଅର ଗୋଟେ ବିଚିତ୍ର ଆଚ୍ଛନ୍ନତା। ଯେତେବେଳେ ଭାରତର ଚିତ୍ରକଳା ଭୀଷଣ ଭାବରେ ପାଶ୍ଚାତ୍ୟ ପ୍ରଭାବିତ, ସେତେବେଳେ ପ୍ରାଚ୍ୟ ଶିଳ୍ପଶାସ୍ତ୍ରର ଆଦର୍ଶକୁ ନୂଆରୂପରେ ଆଙ୍କିବାର ସାହସ କରିଛନ୍ତି ଦିନନାଥ। ଚିତ୍ରକର ବ୍ୟତୀତ ଜଣେ ଲେଖକ, କଳା ଐତିହାସିକ ଓ ସମୀକ୍ଷକ ଭାବରେ ତାଙ୍କର ପ୍ରତିଷ୍ଠା ସୁବିଦିତ। ଓଡ଼ିଶୀ କଳାର ମୁଖ୍ୟ ଉପାଦାନ ଭିତ୍ତିଚିତ୍ର, ପଟଚିତ୍ର, ଭାସ୍କର୍ଯ୍ୟ ଓ ସ୍ଥାପତ୍ୟର ଗବେଷଣା କ୍ଷେତ୍ରରେ ସେ ପ୍ରମୁଖ ଭୂମିକା ନେଇଛନ୍ତି। ପ୍ରଥମ ଓଡ଼ିଆ ଭାବରେ କେନ୍ଦ୍ର ଲଳିତକଳା ଏକାଡେ଼ମୀର ସମ୍ପାଦକ ଦାୟିତ୍ୱ ସେ ସଫଳତାର ସହ ତୁଲାଇଛନ୍ତି। ଚିତ୍ରକଳା ବ୍ୟତୀତ ସାହିତ୍ୟ ସର୍ଜନାରେ ମଧ୍ୟ ଶ୍ରୀପାଠୀଙ୍କର ବିଶେଷ ଅବଦାନ ରହିଛି। ତାଙ୍କ ଜୀବନ ସ୍ମୃତିର ତିନୋଟି ସ୍ୱାକ୍ଷର ପୁଞ୍ଜିକୟାଁର ଫକୀର, ଦିଗପହଣ୍ଡିର ଡ୍ରଇଁମାଷ୍ଟ୍ରେ ଏବଂ ଚିଲିକା ପାଣିରେ ଛାଇ ଆମ ସାହିତ୍ୟର ଏକ ଏକ ଚମତ୍କାର ସଂଯୋଜନା।

ନରେନ୍ଦ୍ର ନାରାୟଣ ଦାଶ: ଓରିଏଣ୍ଟାଲ୍ ଏକାଡେ଼ମୀ ଅଫ୍ ଆର୍ଟସ୍ ଆଣ୍ଡ ଲେଟର୍ସର ନିର୍ଦ୍ଦେଶକ ନରେନ୍ଦ୍ର ନାରାୟଣ ଦାଶଙ୍କ ଅଭିମତ ହେଲା 'ବ୍ୟକ୍ତିଗତ ଜୀବନରେ ଅନେକ ଶୋକକୁ ଲୁହରେ ବୁହାଇ ନ ଦେଇ ତାହାକୁ ତୁଳି, ରଙ୍ଗ ଓ କାନଭାସ୍ ମାଧ୍ୟମରେ

ପ୍ରକଟିତ କରିବା ପାଇଁ ଯେଉଁ ଉଦ୍ୟମ କରିଛନ୍ତି ତାହା ଓଡ଼ିଶାର ଚାରୁକଳା ଓ ଚିତ୍ର ପରମ୍ପରାକୁ ଶାଣିତ, ରସାପ୍ଳୁତ ଓ ଲୋକାଭିମୁଖୀ କରି ଅଧିକ ସମ୍ଭାବନାମୟ କରିଦେଇଛି। କଳାପ୍ରତି ଦିନନାଥ ବାବୁଙ୍କ ସାମଗ୍ରିକ ଦୃଷ୍ଟିଭଙ୍ଗୀ ଓ ବିଚାରଧାରା ତାଙ୍କୁ ଏପରି ଏକ ଅମନନୀୟ ପରିପୂର୍ଣ୍ଣତା ଆଣି ଦେଇଛି, ଯାହା ଫଳରେ କଳାର ଅନ୍ୟାନ୍ୟ ଦିଗ ଯଥା ସାହିତ୍ୟ, ସାମାଲୋଚନା ଆଦି କ୍ଷେତ୍ରରେ ମଧ୍ୟ ସେ ଅପୂର୍ବ ସଫଳତା ଅର୍ଜନ କରିଛନ୍ତି।' [୭]

ଡ଼କ୍ଟର ଦିନନାଥ ପାଠୀଙ୍କ ଜୀବନୀ, ସାହିତ୍ୟ ଓ ଚିତ୍ରକଳାକୁ ନେଇ **ବାଙ୍ମୟ ଚିତ୍ରପଟ, ଅର୍ଦ୍ଧଶତାବ୍ଦୀ ଓଡ଼ିଶାର ଚିତ୍ରକଳା** ଶୀର୍ଷକ ଏକ ଅଭିନନ୍ଦନ ଗ୍ରନ୍ଥ ୨୦୧୨ ମସିହା ମେ ମାସ ୨୭ ତାରିଖରେ ପଦ୍ମଭୂଷଣ ଡ଼କ୍ଟର ରମାକାନ୍ତ ରଥଙ୍କ ଦ୍ୱାରା ଲୋକାର୍ପିତ ହୋଇଛି। [୮] ଏହି ୭୦୦ ପୃଷ୍ଠାର ପୁସ୍ତକରେ ଡ଼କ୍ଟର ପାଠୀଙ୍କ ଶିକ୍ଷକତା, କଳା ସର୍ଜନା, ସାରସ୍ୱତ ସୃଷ୍ଟି, କଳା ଗବେଷଣା ଏବଂ ବିଭିନ୍ନ ଜାତୀୟ ଓ ଆନ୍ତର୍ଜାତୀୟ ପ୍ରଦର୍ଶନୀରେ ସ୍ଥାନ ପାଇଥିବା ଚିତ୍ର ଆଦି ଆଲୋଚିତ ହୋଇଛି।

ଅତୀତରେ ଉଚ୍ଚ ବିଦ୍ୟାଳୟଗୁଡ଼ିକରେ ଛାତ୍ରଛାତ୍ରୀମାନଙ୍କୁ ବିଧିବଦ୍ଧ ଭାବେ ନିଯୁକ୍ତି କଳା ଶିକ୍ଷକଙ୍କ ଦ୍ୱାରା ଡ୍ରଇଁ ଶିକ୍ଷା ଦିଆଯାଉଥିଲା, ଯାହାକି ପରବର୍ତ୍ତୀ କାଳରେ ସେମାନଙ୍କର ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ଶିକ୍ଷା, ବିଶେଷତଃ ପ୍ରାଣୀ ବିଜ୍ଞାନ, ଉଦ୍ଭିଦ ବିଜ୍ଞାନ, ଜୀବନ ବିଜ୍ଞାନ, ନୃତତ୍ତ୍ୱ, ଭୂତତ୍ତ୍ୱ, ଭୂଗୋଳ, ପଦ୍ମତତ୍ତ୍ୱ, ଚିକିତ୍ସା ବିଜ୍ଞାନ, ଯାନ୍ତ୍ରିକ ବିଜ୍ଞାନ ପ୍ରଭୃତି ବିଷୟ ଅଧ୍ୟୟନରେ ସହାୟକ ହେଉଥିଲା।

କିନ୍ତୁ କ୍ଷୋଭର ବିଷୟ ଅଧୁନା ସ୍କୁଲଗୁଡ଼ିକରେ ଡ୍ରଇଁ ଶିକ୍ଷା ଉପରେ ଆଉ ଗୁରୁତ୍ୱ ଦିଆଯାଉନାହିଁ। ସ୍କୁଲ୍ ପାଠ୍ୟକ୍ରମରୁ ତାହା ବାଦ୍ ପଡ଼ିଲାଣି। ଡ୍ରଇଁ ଟିଚର ବା କଳା ଶିକ୍ଷକ ପଦର ମର୍ଯ୍ୟାଦା ଓ ଆବଶ୍ୟକତା ଆଉ ନାହିଁ। ସ୍କୁଲ୍ ଗୁଡ଼ିକରେ ଡ୍ରଇଁ ଶିକ୍ଷାର ପୁନଃପ୍ରଚଳନ ସପକ୍ଷରେ ଡ଼କ୍ଟର ପାଠୀ ଯଥାର୍ଥରେ ସ୍ୱର ଉତ୍ତୋଳନ କରିଛନ୍ତି।

ଦୀର୍ଘ ପଞ୍ଚତିରିଶି ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ସେ ଆନ୍ତର୍ଜାତିକ ଖ୍ୟାତିସଂପନ୍ନ ବିଦ୍ୱାନ ଡ଼କ୍ଟର ଏବରହାର୍ଡ଼ ଫିସରଙ୍କ ଗବେଷଣା ସହଯୋଗୀ ଭାବେ ବହୁ କଳା ପ୍ରକଳ୍ପର ରଚୟିତା। ଏସବୁ କଳା ପ୍ରକଳ୍ପରେ ଓଡ଼ିଶା ମୁଖ୍ୟ ଭୂମିକା ଗ୍ରହଣ କରିଛି।

କେବଳ ଭାରତବର୍ଷରେ ନୁହେଁ, ସାରା ବିଶ୍ୱର ବିଭିନ୍ନ ଦେଶ, ଯଥା- ସୁଇଜରଲାଣ୍ଡ, ବ୍ରିଟେନ, ଜର୍ମାନୀ, ଫ୍ରାନ୍ସ, ଇଟାଲୀ, ଗ୍ରୀସ୍, ହଲାଣ୍ଡ, ଅଷ୍ଟ୍ରିଆ, ଯୁକ୍ତରାଷ୍ଟ୍ର ଆମେରିକା, କାନାଡ଼ା, ଚୀନ୍, ଜାପାନ, ଇଣ୍ଡୋନେସିଆ, ମାଲେସିଆ, ବାଲି, ସିଙ୍ଗାପୁର, ଥାଇଲାଣ୍ଡ ପ୍ରଭୃତି ଦେଶରେ ଓଡ଼ିଶୀ ଚିତ୍ରକଳାର ଐତିହ୍ୟ ଓ ପରମ୍ପରାକୁ ପ୍ରତିଷ୍ଠା କରାଇବାର ବିରଳ ସଫଳତା ହାସଲକରି ସଂସ୍କୃତି ସଂପନ୍ନ, ସ୍ୱାଭିମାନୀ ଡ଼କ୍ଟର ପାଠୀ ଯଶସ୍ୱୀ ହୋଇଛନ୍ତି। କଳା ଓ ସଂସ୍କୃତି ସଂପର୍କୀୟ ବିଭିନ୍ନ ପ୍ରମୁଖ ଓ ଗୁରୁତ୍ୱପୂର୍ଣ୍ଣ ସଂସ୍ଥାର ପୁରୋଧା ଭାବେ ଯୁବ ପିଢ଼ି ତଥା କଳାନୁରାଗୀଙ୍କ ପାଇଁ ସେ ଉତ୍ସାହ ଓ ଅନୁପ୍ରେରଣାର ଉତ୍ସ ହୋଇଛନ୍ତି। ସେ ଓଡ଼ିଶାର ବହୁ ଶିଳ୍ପୀଙ୍କୁ ଜାତୀୟ ସ୍ତରରେ ପରିଚିତ କରାଇଛନ୍ତି। ଜଣେ

କର୍ତ୍ତବ୍ୟପରାୟଣ ଓ ନୀତିନିଷ୍ଠ ଶିକ୍ଷକ ଓ ଅଧ୍ୟକ୍ଷ ଭାବେ ସେ ଖ୍ୟାତି ଲାଭ କରିଛନ୍ତି । ଜଣେ ବିଶିଷ୍ଟ ସାହିତ୍ୟିକ, ପ୍ରବୀଣ ସାମାଲୋଚକ ଓ କୃତବିଦ୍ୟ ସୁଲେଖକ ଭାବେ ସେ ବେଶ୍ ସୁପରିଚିତ । ସାରସ୍ୱତ ସୃଷ୍ଟିରେ ତାଙ୍କର ଧୀ ଧୀଷଣା ଅବିସମ୍ବାଦିତ । ନୂତନ ଦୃଷ୍ଟିକୋଣ, ସୂକ୍ଷ୍ମ ବିଚାରଧାରା ତଥା ମାର୍ଜିତ ପରିପ୍ରକାଶରେ ତାଙ୍କ ଆଲୋଚନା ହୋଇଛି ସରସ ସୁନ୍ଦର । ସେ ଯେଉଁ କ୍ଷେତ୍ରରେ ପ୍ରବେଶ କରିଛନ୍ତି, ସେହି କ୍ଷେତ୍ରଟି ତାଙ୍କ ଅଗାଧ ପ୍ରାଜ୍ଞତା, କର୍ତ୍ତବ୍ୟନିଷ୍ଠା, ମୌଳିକତା, ଏକାଗ୍ରତା, ସାଧୁତା ତଥା ଶୃଙ୍ଖଳିତ ଆଚରଣ ଯୋଗୁଁ ମୋହିତ ହୋଇଛି । ବିଭିନ୍ନ ପଦପଦବୀରେ ଦାୟିତ୍ୱ ତୁଲାଇବାରେ ସେ ନିଜ କାର୍ଯ୍ୟ ଦକ୍ଷତାର ସମ୍ୟକ ପରିଚିତି ପ୍ରଦର୍ଶନ କରିଛନ୍ତି । ଏହିପରି ଡ଼କ୍ଟର ପାଠୀ ଜଣେ ପରିପୂର୍ଣ୍ଣ ତଥା ବହୁମୁଖୀ ପ୍ରତିଭା ସଂପନ୍ନ ବିରଳ ବ୍ୟକ୍ତିତ୍ୱ । ତାଙ୍କୁ ବଡ଼ଖେମୁଣ୍ଡି ରତ୍ନ କହିଲେ ଅତ୍ୟୁକ୍ତି ହେବନାହିଁ । ବାସ୍ତବରେ ଚାରୁ ଓ କାରୁକଳା, କଳା ଇତିହାସ ତଥା ସାହିତ୍ୟ ସର୍ଜନା କ୍ଷେତ୍ରରେ ଡ଼କ୍ଟର ପାଠୀ ଓଡ଼ିଶାର ଗର୍ବ ଓ ଗୌରବ ।

## ପାଦଟୀକା

୧) Niranjan Mohanty, *Dinanath Pathy, Drawing Master of Digapahandi*, ପୃ ୩୯-୫୧, Second English Edition, 2010, Navjeevan Books, New Delhi

୨) ଦିନନାଥ ପାଠୀ, *ପୁଞ୍ଜିକପାଁର ଫକୀର*, ପୃ ୧୯-୨୦, ପ୍ରଥମ ସଂସ୍କରଣ, ୨୦୦୪, ପ୍ରକାଶକ, ମିଡ଼ିଆ ଓଡ଼ିଶା, ଭୁବନେଶ୍ୱର

୩) Niranjan Mohanty, op, cit, pp 17, 113-135, 137-138

୪) ସୌଭାଗ୍ୟ ପାଠୀ, *ଚିତ୍ରାଙ୍କି: ଦିନନାଥଙ୍କ ଚିତ୍ରକଳା ଓଡ଼ିଆ ଅସ୍ମିତାର ରୂପକଥା*, ପୃ. ୨୧-୫୫, ୱାର୍କିଙ୍ଗ ଆର୍ଟିଷ୍ଟସ୍ ଆସୋସିଏସନ୍ ଅଫ୍ ଓଡ଼ିଶା, ଭୁବନେଶ୍ୱର, ୨୦୧୧

୫) ସୁରେଶ ଚନ୍ଦ୍ର ପାଣିଗ୍ରାହୀ, *ସ୍ମୃତିର ସ୍ମାରକୀ ଗଞ୍ଜାମ*, ପୃ. ୨୧, ପ୍ରଥମ ସଂସ୍କରଣ, ୨୦୦୮, ତାରାତାରିଣୀ ପୁସ୍ତକାଳୟ, ବ୍ରହ୍ମପୁର

୬) ଦିନନାଥ ପାଠୀ, *ପୃଞ୍ଜିକର୍ଯାଁର ଫକୀର*, ପୃ ୮୪

୭) ସୌଭାଗ୍ୟ ପାଠୀ, *ଚିତ୍ରାଙ୍କି: ଦିନନାଥଙ୍କ ଚିତ୍ରକଳା ଓଡ଼ିଆ ଅସ୍ମିତାର ରୂପକଥା* ପୃ. ୧-୨, ୧୮, ୬୬

୮) ଦିଲ୍ଲୀପ କୁମାର ତ୍ରିପାଠୀ ଓ ସୌଭାଗ୍ୟ ପାଠୀ, *ବାଙ୍ମୟ ଚିତ୍ରପଟ, ଅର୍ଦ୍ଧଶତାବ୍ଦୀ ଓଡ଼ିଶାର ଚିତ୍ରକଳା*, ପୃ ୨୦, ପ୍ରକାଶକ, ପକ୍ଷୀଘର ପ୍ରକାଶନ, ୨୦୧୨। ଏଥିରେ ପ୍ରକାଶିତ ରଙ୍ଗିନ୍ ଚିତ୍ରଗୁଡ଼ିକ ପ୍ରଣିଧାନଯୋଗ୍ୟ।


Dinanath Pathy
Third Rietberg Award
June 4, 2014

ବିଦିତ ଖେମୁଣ୍ଡି ରାଜ୍ୟ ପବିତ୍ର ଗଞ୍ଜାମେ,
ସୁରମ୍ୟ ଅମରା ଯଥା ଶୋଭେ ସୁରଧାମେ।

ଅମରାର ଅଳଙ୍କାର ଯେସନ ଇନ୍ଦ୍ରାଣୀ,
ତେସନ ଦିଗପହଣ୍ଡି ତା'ର ରାଜଧାନୀ।

ଚୌଦିଗେ ସୁନାଇଗିରି ମେଖଳା ସେ ଧରେ,
କିବାସେ କନକ ଲଙ୍କା ସାଗର ବକ୍ଷରେ।

ଅବା ଶରଦଭ୍ର ବିଶ୍ୱ ବିଦ୍ୟୋତକ,
ଅଥବା ଅନନ୍ତ ବକ୍ଷେ କୌସ୍ତୁଭ ପଦକ।

ମନୋରମା ସେ ସୁଷମା କଳିବ ବା କିଏ,
ଖସି ପଡ଼ିଛି କି ସ୍ୱର୍ଗୁ ଦେବକନ୍ୟା ଟିଏ।

ଦେଉଳ ମାଳିନୀ ସେହୁ ହର୍ମ୍ୟକିରୀଟିନୀ,
ନଗରୀ ସୀମାନ୍ତ ମଣି ଚିର ଯଶସ୍ୱିନୀ।

କବିଶେଖର ଚିନ୍ତାମଣି ମହାନ୍ତି
(ପ୍ରକୃତି ପେଟିକା କାବ୍ୟ)

